ପୁସ୍ତକଟି ତାଙ୍କର ସଂସ୍କୃତ ଜ୍ଞାନର ପରାକାଷ୍ଠା ପ୍ରଦର୍ଶିତ କରେ । ତାଙ୍କର 'ସୁଦର୍ଶନାନନ୍ଦ ଚଂପୂ' ୧୯୨୧ରେ ଉତ୍କଳ ସାହିତ୍ୟ ପ୍ରେସରେ ପ୍ରକାଶ ପାଇଥିଲା । କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ ଚଂପୂ ଅନୁସାରେ ଏଥିରେ ସଂସ୍କୃତ ଓ କକାରାଦି ନିୟମରେ ସଙ୍ଗୀତ ସନ୍ନିବେଶିତ ହୋଇଅଛି । ଶ୍ରୀ ଭଗବତୀ ଜଣାଣ (୧୯୧୪) ପୁସ୍ତକରେ ଚଉତିଶା ଶୈଳୀରେ ଭଗବ୍ତୀଙ୍କ ଜଣାଣ ଲିଖିତ ।''ଆତ୍ମବୋଧ ବିଳାପ'' ପୁସ୍ତିକାଟି ଏକ ବିଳାପ ସଙ୍ଗୀତ । ଏଥିରେ କନ୍ୟାର ମୃତ୍ୟୁରେ ପିତାର ମହିମ୍ନ ଶୋକ ପ୍ରକାଶିତ । ପରିଣୟ ଚଂପୂ (୧୯୧୩) ବାମଣ୍ଡାରାଜା ସଚ୍ଚିଦାନନ୍ଦ ଦେବଙ୍କ ଜ୍ୟେଷ୍ଠପୁତ୍ର ଦିବ୍ୟଶଙ୍କର ଦେବଙ୍କ ପରିଣୟ ଉପଲକ୍ଷେ ସଂସ୍କୃତ ଓ ଓଡ଼ିଆରେ ରଚିତ ଚଂପୂ । ଶ୍ରୀଚରଣ ଶତକଂ (୧୯୧୫) ବାମଣ୍ଡା ହିତୈଷିଣୀ ପ୍ରେସରେ ପ୍ରକାଶିତ । ଏଥିରେ ସଦାଶିବଙ୍କ ବନ୍ଦନା କରାଯାଇଛି । ସଂସ୍କୃତରେ ରଚିତ ପୁସ୍ତକଟିର ପ୍ରତିଟି ଶ୍ଳୋକର ଓଡ଼ିଆ କବିତାନୁବାଦ କରିଛନ୍ତି କବି । ଏତଦ୍‌ବ୍ୟତୀତ ତାଙ୍କର ଅନେକ ପୁସ୍ତକ ପ୍ରକାଶିତ ଓ ଅପ୍ରକାଶିତଭାବେ ରହିଯାଇଛି । ତାଙ୍କ ରଚନାରୁ ସଂସ୍କୃତ ଓ ଓଡ଼ିଆ ଭାଷାରେ ଗଭୀର ବ୍ୟୁତ୍ପତ୍ତିଥିବାର ସ୍ପଷ୍ଟ ହୁଏ ।

### ୬ । ଚିନ୍ତାମଣି ମିଶ୍ର ଶର୍ମା :

ଚିନ୍ତାମଣି ମିଶ୍ର ବାମଣ୍ଡା ଆଲୋଚନା ସଭାର ଅନ୍ୟତମ ସଭ୍ୟ । ବାସୁଦେବଙ୍କ ଚିତ୍ରୋତ୍ପଳା କାବ୍ୟ ଉପରେ ଚିତ୍ରୋତ୍ପଳାର ଦୋଷ ପରିହାର ଏକ ଉତ୍କୃଷ୍ଟ ରଚନା ।

### ୭ । ବ୍ରଜବନ୍ଧୁ ମିଶ୍ର :

ତାଳଚେର ଜନ୍ମିତ ବ୍ରଜବନ୍ଧୁ ମିଶ୍ର ଓଡ଼ିଆ ସାରସ୍ୱତ କ୍ଷେତ୍ରରେ 'ଉତ୍କଳ ବନ୍ଧୁ' ନାମରେ ପ୍ରସିଦ୍ଧ । ସେ ୧୮୯୯ ଖ୍ରୀ:ରୁ ମୃତ୍ୟୁ ପର୍ଯ୍ୟନ୍ତ ବାମଣ୍ଡାରେ ଶିକ୍ଷକତା ସହିତ ସାରସ୍ୱତ ସାଧନାରେ ଜୀବନ ଅତିବାହିତକରନ୍ତି । ସେ ସମ୍ବଲପୁର ହିତୈଷିଣୀ (ବିଦ୍ୟାରତ୍ନଙ୍କ ପରେ) ଉତ୍କଳ ସେବକ, ଗଡ଼ଜାତ ବାସିନୀ ପ୍ରଭୃତି ପତ୍ରିକାର ସମ୍ପାଦନା କାର୍ଯ୍ୟ ନିର୍ବାହ କରିଥିଲେ ।

ବ୍ରଜବନ୍ଧୁ ଶତାଧିକ ପୁସ୍ତକର ସ୍ରଷ୍ଟା । ସଦ୍ୟୋଜାତ ସ୍ତବ, ଦୁର୍ଗା ସ୍ତବ, ଛାନ୍ଦମାନସ, କୀଚକବଧ, ଭୀଷ୍ମ ଶରଶଯ୍ୟା, ବାଳୀବଧ, ବାଲ୍ମୀକି, ଶ୍ରୀକୃଷ୍ଣ ସ୍ତବ, ପଞ୍ଚଧାରା, କୁସୁମଲତା, ବସନ୍ତ କାନନ, ଶିଶିର ପଲ୍ଲୀ, ବୀଣାପାଣି, ଚିତ୍ରସମନ୍ୱୟ, ଜୀବନ-ଦର୍ପଣ, ଉତ୍କଳ ମାତା, ଆଲେଖ୍ୟ ଗୀତି, ଉପଦେଶ ସୁଧାନିଧି, ମଦୁଆର ବିଳାପ, ପ୍ରାର୍ଥନା, କୌତୁକ ଗୀତି, ଅଦ୍ଭୁତସ୍ୱପ୍ନ ପ୍ରଭୃତି ତାଙ୍କର ଉଲ୍ଲେଖନୀୟ କୃତି । ଏତଦ୍‌ବ୍ୟତୀତ ପ୍ରେମବାଣୀ, ନବସଙ୍ଗୀତ, ସଙ୍ଗିନୀ ଚଉତିଶା, ସୁଢ଼ଳ କୋଇଲି, ତାଳଚେର ପ୍ରଶସ୍ତି, ଭ୍ରାନ୍ତ ପଥିକ ପ୍ରଭୃତି କବିତା ମଧ୍ୟ ତାଙ୍କର କାବ୍ୟ ପରାକାଷ୍ଠାର ପରିଚୟ ପ୍ରଦାନ କରେ ।

ଜୀବନ ଦର୍ପଣ, ଚିତ୍ର ସମନ୍ୱୟ ଓ ଭୀଷ୍ମକାବ୍ୟ କବିଙ୍କର ଅନନ୍ୟ ସୃଷ୍ଟି । ବ୍ରଜବନ୍ଧୁ ସଚ୍ଚିଦାନନ୍ଦଙ୍କ ମାୟାଶବରୀ ଓ ଭୀଷ୍ମ କାବ୍ୟର ଯାତ୍ରା ରୂପ ପ୍ରଦାନ କରିଥିଲେ । ଉଭୟ ଓଡ଼ିଶାରେ ଖୁବ୍ ଲୋକପ୍ରିୟ ହୋଇପାରିଥିଲା ।

ବସନ୍ତ ମାଳତୀ (୧୯୨୦, ଉପନ୍ୟାସ), ଉପଧାବିଚାର (୧୯୧୩) ଓ ଉପଧା ଅନିଷ୍ଟଚିନ୍ତା (୧୯୧୪) ଆଲୋଚନା ପୁସ୍ତକ ତାଙ୍କର ବିଶ୍ଳେଷଣଧର୍ମୀ ପ୍ରତିଭାର ପରିଚୟ ପ୍ରଦାନ କରେ ।

ପ୍ରାଚୀନ ଓ ଆଧୁନିକ କାବ୍ୟ ସମନ୍ୱୟ ଧାରାର ଜଣେ ବଳିଷ୍ଠ ସାଧକ ବ୍ରଜବନ୍ଧୁ ବାମଣ୍ଡା ପଣ୍ଡିତ ସଭାର ଅନ୍ୟତମ ସକ୍ରିୟ ସଭ୍ୟ ଥିଲେ ।

## ୮ । ରତ୍ନାକର ଶର୍ମା :

ରତ୍ନାକର ଶର୍ମା ୧୮୭୯ ମସିହାରେ କୋଚିଣ୍ଡାଠାରେ ଜନ୍ମଗ୍ରହଣ କରିଥିଲେ । ଦେବଗଡ଼ଠାରେ ମିଡ଼ିଲ ଭର୍ଣ୍ଣାକ୍ୟୁଲାର୍ ଶିକ୍ଷା ସମାପ୍ତ ପରେ କିଛି ସମୟ ଶିକ୍ଷକତା କରିଥିଲେ ହିତୈଷିଣୀ ପୃଷ୍ଠାରେ ତାଙ୍କର ପ୍ରାରମ୍ଭିକ ଜୀବନର କାବ୍ୟ କବିତା ପ୍ରକାଶ ପାଏ । ୧୯୧୦ ବେଳକୁ ସେ ସାମୟିକ ଭାବେ ଉକ୍ତ ପତ୍ରିକାର ସମ୍ପାଦନା ମଧ୍ୟ ଗ୍ରହଣ କରିଥିଲେ ।

ରତ୍ନାକରଙ୍କ କବି-ପ୍ରତିଭାରେ ଅନେକ ଗଡ଼ଜାତି ରାଜା ଆକୃଷ୍ଟ ହୋଇ ପୁରସ୍କୃତ ଓ ସମ୍ମାନିତ କରିଥିଲେ । ନୀତିଦର୍ପଣ ପୁସ୍ତକ ରଚନା ପାଇଁ ଖଡ଼ିଆଳ ଯୁବରାଜ ବୀରବିକ୍ରମ ଦେବ କବିଙ୍କୁ ପୁରସ୍କୃତ କରିଥିଲେ । ବଡ଼ଖେମୁଣ୍ଡି ଦରବାର କବିଙ୍କ କବିତ୍ୱକୁ ସମ୍ମାନଜଣାଇ 'କବିଭୂଷଣ' ଉପାଧି ପ୍ରଦାନ କରିଥିଲେ । ୧୯୦୯ରେ କାଶୀପୁର ଅଧୀଶ୍ୱର ତାଙ୍କୁ 'ସାହିତ୍ୟାଳଙ୍କାର' ଉପାଧିରେ ଭୂଷିତ କରିଥିଲେ । ରତ୍ନାକରଙ୍କର 'ହେମଲତା' (୧୮୯୨), 'ଅଜବିଳାପ' (୧୯୦୦), 'ନୀତିଦର୍ପଣ, 'ନୀତିକୁସୁମ' (୧୯୦୦) 'ସଂଯୁକ୍ତା' (୧୯୦୭), 'ଚମ୍ପାବତୀ' (୧୯୧୦), 'ବପାଳିମାଳି' (୧୯୧୨), 'ଦୁଇ-ସଙ୍ଗାତ' (୧୯୧୦) ପ୍ରଭୃତି ସଂକଳନ ପ୍ରଶଂସା ଦାବୀ କରେ । ଏତଦ୍‌ବ୍ୟତୀତ ତାଙ୍କର ଅନେକ କବିତା ଓ ପ୍ରବନ୍ଧ ହିତୈଷିଣୀରେ ପ୍ରକାଶିତ । ତାଙ୍କ 'ଅଜବିଳାପ' ସଂସ୍କୃତ ରଘୁବଂଶ କାବ୍ୟର ଏକ ମାର୍ମିକ ଅନୁବାଦ, 'ପାର୍ବତୀ' ରାଧାନାଥଙ୍କ 'ପାର୍ବତୀ' କାବ୍ୟ ଉପସଂହାରର ଅବଲମ୍ବନରେ ରଚିତ ।

ବାମଣ୍ଡା ଆଲୋଚନା ସଭାର ଜଣେ ନିୟମିତ ସଭ୍ୟ ରୂପେ ସେ ସମ୍ମାନିତ । ପୌରାଣିକ କଥାବସ୍ତୁର ଜୀର୍ଣ୍ଣ ନିର୍ମୋକ ଉନ୍ମୋଚନ କରି ସେ ଆଧୁନିକତାର ଦୁକୂଳ ପିନ୍ଧାଇଥିଲେ । ଅନେକ ସଂସ୍କୃତ ସାହିତ୍ୟ ଅଧ୍ୟୟନ କରି ସେ ଓଡ଼ିଆରେ ଅନୁବାଦ କରିଥିଲେ ।

ଏତଦ୍‌ବ୍ୟତୀତ ନୀଳମଣି ବିଦ୍ୟାରତ୍ନ, ନାରାୟଣଚନ୍ଦ୍ର ଦାସ, ଦାମୋଦର ମିଶ୍ର ପ୍ରମୁଖ ସାହିତ୍ୟିକ ପଣ୍ଡିତସଭାର ଆଲୋଚନାରେ ଭାଗ ନେଉଥିଲେ । ବାହ୍ୟ ଆଗତ ଅନେକ ପଣ୍ଡିତ ଏ ସଭାକୁ ବରିତ ହେଉଥିଲେ । ଶାସ୍ତ୍ର ଆଲୋଚନା ସହିତ ସମସ୍ୟାପୂରଣ, ପାଦପୂରଣ, ବିଭିନ୍ନ ବନ୍ଧର ପ୍ରୟୋଗ ଉପରେ ଗୁରୁତ୍ୱ ଦିଆଯାଉଥିଲା । ଏକ ବିଷୟକୁ ନେଇ ଯୌଥ କବିତା ରଚନାର ପରମ୍ପରା ଏଇଠୁଁ ସୃଷ୍ଟି ହେଲା । ଜନ୍ମନେଲା 'ଜହ୍ନମାମୁଁ' ପରି କବିତା ପୁସ୍ତକ । ପୂର୍ବରୁ ରାଜକୁମାର ସଚ୍ଚିଦାନନ୍ଦଙ୍କ ଉଦ୍ୟମରେ ୧୮୯୪ରେ ପ୍ରକାଶ ପାଇଥିଲା 'ପାରିଜାତମାଳା' କବିତା ପୁସ୍ତକ । ଏହି ପୁସ୍ତକରେ ଛଅ ଋତୁର କାବ୍ୟିକ ବର୍ଣ୍ଣନା ସ୍ଥାନିତ । ସଚ୍ଚିଦାନନ୍ଦ, ଜଳନ୍ଧର ଓ ଦାମୋଦର ମିଶ୍ର ପ୍ରତ୍ୟେକେ ଦୁଇଟି ଋତୁକୁ ନେଇ କବିତା ରଚନା କରିଛନ୍ତି । ପରେ ପରେ ୧୮୯୯-୧୯୦୦ ବେଳକୁ ସୁଢ଼ଳଦେବଙ୍କ ଦ୍ୱିତୀୟ ପୁତ୍ର ବଳଭଦ୍ର ଦେବ 'ଚନ୍ଦ୍ରର ଶରୀରେ ଏହା ନୁହେଁ କଳଙ୍କ' ପାଦ ପୂରଣ ପାଇଁ ଦିଅନ୍ତି । ଏହି ଶୀର୍ଷକରେ ଅଜସ୍ର କବିତା ସୃଷ୍ଟି ହୋଇ ଓଡ଼ିଶାର ବିଭିନ୍ନ ସ୍ଥାନରୁ ହିତୈଷିଣୀକୁ ପ୍ରକାଶପାଇଁ ଆସେ । ଏଣୁ ବାମଣ୍ଡା ସଭାର ପ୍ରତିଟି ସାରସ୍ୱତ କୃତି ସମ୍ବଲପୁର ହିତୈଷିଣୀ ମାଧମରେ ଜଗତ୍-ବ୍ୟାପିନୀହୁଏ । ଆଧୁନିକ ହେଉବା ପ୍ରାଚୀନ ହେଉ ପ୍ରତିଟି ରଚନା ପଣ୍ଡିତ ସଭାଦ୍ୱାରା ସୁଢ଼ଳ ଦେବଙ୍କ ତତ୍ତ୍ୱାବଧାନରେ ପରୀକ୍ଷିତ ତଥା ଆଲୋଚିତ ହେଲା ପରେ ପ୍ରକାଶ ପାଇଥାଏ ।

ସଂସ୍କୃତ ଭାଷା ଓ ସାହିତ୍ୟର ଚର୍ଚ୍ଚା ଫଳରେ ଏକ ମାର୍ଜିତ ଓ ଶୁଦ୍ଧ ବାତାବରଣ ସୃଷ୍ଟି ସୁଢ଼ଳଦେବଙ୍କ ଉଦ୍ଦେଶ୍ୟ ଥିଲା । ସେ ବ୍ରାହ୍ମଣମାନଙ୍କୁ ସଂସ୍କୃତ ପଢ଼ିବାର ବ୍ୟବସ୍ଥା କରିଥିଲେ । ନିଜ ରାଜ୍ୟରେ ବିଭିନ୍ନ ପୂଜା ଅର୍ଚ୍ଚନା ତଥା ବ୍ରତ ବିବାହାଦି କର୍ମ ଶୁଦ୍ଧ ବୈଦିକରୀତିରେ କରିବା ପାଇଁ ସେ ବ୍ରାହ୍ମଣମାନଙ୍କୁ ଶାସ୍ତ୍ରଶିକ୍ଷା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ନିଜେ ବ୍ରାହ୍ମଣମାନଙ୍କୁ ପରୀକ୍ଷା କରିବାପରେ ଉପଯୁକ୍ତ ଶାସ୍ତ୍ରଜ୍ଞ ବ୍ରାହ୍ମଣଙ୍କୁ ବିଭିନ୍ନ ବୈଦିକ କର୍ମ କରିବାକୁ ଅନୁମତି ପ୍ରଦାନ କରାଯାଉଥିଲା । ଏପରିକି ଅନଭିଜ୍ଞ ବ୍ରାହ୍ମଣ ପ୍ରଜାମାନଙ୍କର ଗାର୍ହ୍ୟସ୍ଥ ଧର୍ମାନୁଷ୍ଠାନରେ ପୌରହିତ୍ୟ କରିବା ରାଜାଦେଶରେ ନିଷିଦ୍ଧ ଥିଲା । ଏହା ଅମାନ୍ୟ କଲେ ଦଣ୍ଡବିଧାନ ହେବାର ଘୋଷାଣ କରାଯାଇଥିଲା । ଏ ରାଜାଦେଶ ୧୩ ଏପ୍ରିଲ ୧୮୯୬ରେ ଘୋଷିତ ହୋଇଥିଲା ଏବଂ 'ବାମଣ୍ଡାରେ ପୁରୋହିତ ପରୀକ୍ଷା', ଶୀର୍ଷକରେ ସମ୍ବଲପୁର ହିତୈଷିଣୀ ଏହାକୁ ଘୋଷଣା କରିଥିଲା । (ସ.ହି. ୯/୪୭)

ସଂସ୍କୃତ ସାହିତ୍ୟର ଉନ୍ନତିପାଇଁ ବାସୁଦେବ ପୁରୀ ଜିଲ୍ଲାରେ ଯେଉଁମାନେ ସଂସ୍କୃତ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ ସେମାନଙ୍କୁ ଏକଯୋଡ଼ ସୁବର୍ଣ୍ଣ କୁଣ୍ଡଳ ପ୍ରଦାନ କରିବାର ପ୍ରଥା ପ୍ରଚଳନ କରିଥିଲେ । ତଦନୁସାରେ ପ୍ରତିବର୍ଷ ପାଞ୍ଚଯୋଡ଼ ସୁବର୍ଣ୍ଣ କୁଣ୍ଡଳ ପୁରୀକୁ ପଠାଇଦେଉଥିଲେ । (ସମ୍ବଲପୁର ହିତୈଷିଣୀ – ୧୪/୩୦)

ଏହି ପରଂପରା ସୁଢ଼ଳଦେବଙ୍କ ପରେ ମଧ୍ୟ ସୁରକ୍ଷିତ ହୋଇଥିଲା । ଏହି ପ୍ରସଙ୍ଗରେ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥଙ୍କ ସଂବଲପୁର ହିତୈଷିଣୀ (୨୧/୧୭)ରେ ପ୍ରକାଶିତ ପତ୍ରକୁ ଉଲ୍ଲେଖ କରାଯାଇପାରେ ।

''ମୁଁ ଯେଉଁ ବର୍ଷ କାବ୍ୟତୀର୍ଥ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଏ ମହାରାଜ ସୁଢ଼ଳଦେବ ମହୋଦୟ ସେହିବର୍ଷ ମରଦେହ ତ୍ୟାଗକରି ଅନନ୍ତଧାମକୁ ଯାତ୍ରାକଲେ । ସୁତରାଂ ମୋର ଭାଗ୍ୟରେ ସେ ବର୍ଷ ତାହାଙ୍କଠାରୁ କୁଣ୍ଡଳ ପ୍ରାପ୍ତିଯୋଗ ଘଟିନଥିଲା । କିନ୍ତୁ ବର୍ତ୍ତମାନ କୃତଜ୍ଞଚିତ୍ତରେ ପ୍ରକାଶକରେ ଯେ ବର୍ତ୍ତମାନ ବାମଣ୍ଡାର ନରପତି ସୁଢ଼ଳଦେବଙ୍କର ଅନୁରୂପ ସନ୍ତାନ ଶ୍ରୀଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟ ମୋହର ସେହି ଦାବୀ ଗ୍ରହଣ କରି ଏବଂ ଓଡ଼ିଶା ସ୍କୁଲ ବିଭାଗର ଇନସପେକ୍ଟର (ବର୍ତ୍ତମାନ ଅବସର ପ୍ରାପ୍ତ) ଶ୍ରୀଯୁତ ମଧୁସୂଦନ ରାଓ ମହୋଦୟଙ୍କ ପରାମର୍ଶାନୁସାରେ ଯୋଡିଏ ସୁବର୍ଣ୍ଣ କୁଣ୍ଡଳ ପୁରସ୍କାର ରୂପେ ବର୍ତ୍ତମାନ ମୋତେ ପ୍ରଦାନ କରିଅଛନ୍ତି । ସେହି ପୁରସ୍କାର ଲାଭ କରି ମୁଁ ସ୍ୱର୍ଗତ ମହାରାଜ ସୁଢ଼ଳଦେବଙ୍କ ଉପଲକ୍ଷ୍ୟରେ ଅସଂଖ୍ୟ ଧନ୍ୟବାଦ ଓ ଶ୍ରୀମତ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ମହୋଦୟଙ୍କୁ ଆନ୍ତରିକ ଆଶୀର୍ବାଦ ଅର୍ପଣ କରୁଅଛି ।''

ଯେକୌଣସି ସଂସ୍କୃତ ପୁସ୍ତକ ବାମଣ୍ଡାରେ ବା ବାହାରେ ପ୍ରକାଶ ଲଭୁ ତାକୁ କ୍ରୟ କରି ବାସୁଦେବ ବ୍ରାହ୍ମଣମାନଙ୍କୁ ପ୍ରଦାନ କରୁଥିଲେ । ଏ ପ୍ରସଙ୍ଗରେ ଶତାଧିକ ଶ୍ରୀମଦ୍‌ଭଗବତ୍ ଗୀତା ଟୀକା ସହ କଲିକତାରୁ ଆଣି ବ୍ରାହ୍ମଣମାନଙ୍କୁ ବଣ୍ଟନ କରିବା କଥା ହିତୈଷିଣୀ ଘୋଷଣା କରିଥିଲା । (ସମ୍ବଲପୁର ହିତୈଷିଣୀ – ୩/୪୪)

# ଚତୁର୍ଥ ଅଧ୍ୟାୟ

ବାସୁଦେବଙ୍କ ସଂସ୍କୃତ ଜ୍ଞାନର ଗଭୀରତା ତାଙ୍କର ପ୍ରତିଟି ସାରସ୍ୱତ କୃତିରେ ପ୍ରତିଫଳିତ । ସେ 'ମୁକ୍ତିକୋପନିଷଦ' ଓ ମଣିରତ୍ନମାଳାକୁ' ସଂସ୍କୃତ ଭାଷାରୁ ଓଡ଼ିଆରେ ଅନୁବାଦ କରି ପ୍ରଚାର କରିଥିଲେ । ଏହି ଦୁଇ ପୁସ୍ତକର ଅନୁବାଦରେ ସୁଢ଼ଳଦେବଙ୍କ ସାବଲୀଳ ଗଦ୍ୟରଚନା ପରିଦୃଶ୍ୟମାନ । ତତ୍‌କାଳୀନ ଗଦ୍ୟର କୁଟିଳତା ସୁଢ଼ଳଦେବଙ୍କ ବକ୍ତବ୍ୟରେ ନାହିଁ; ବରଂ ତାଙ୍କର ଅନୁବାଦ ଶୈଳୀ ସ୍ୱଚ୍ଛନ୍ଦ ଓ ସରଳ । ଗୂଢ଼ ତତ୍ତ୍ୱ ସଂବଳିତ ମୁକ୍ତିକ ଉପନିଷଦକୁ ସରଳ ଭାଷାରେ ଅନୁବାଦ କରିବା ତାଙ୍କର ପାଣ୍ଡିତ୍ୟର ପରିଚାୟକ । ମୁକ୍ତିକୋପନିଷଦ୍‌ର ପ୍ରାରମ୍ଭରୁ ଏକ ଦୃଷ୍ଟାନ୍ତ ଗ୍ରହଣ କରାଯାଇପାରେ–

> ପବନ ତନୟ ହନୁମାନ୍, ସର୍ବାନ୍ତର୍ଯ୍ୟାମୀ ନିର୍ବିକାର ନିରଞ୍ଜନ ଓ ସ୍ୱ ସ୍ୱ ରୂପ ଧ୍ୟାନରେ ନିରତ ରାମଚନ୍ଦ୍ରଙ୍କୁ ଧ୍ୟାନ ବିରାମରେ ଅବସର ଜାଣି ପ୍ରଗାଢ଼ ଭକ୍ତି ଓ ବିବିଧ ଶୁଶ୍ରୂଷାଦ୍ୱାରା ସ୍ତବ କରି ଜିଜ୍ଞାସା କଲେ । ହେ ରାମ ! ତୁମ୍ଭେ ପରମାତ୍ମା ସ୍ୱରୂପ, ଭୌତିକ ଦେହଶୂନ୍ୟ ଅଥଚ ସାକାର, ନିତ୍ୟ ଜ୍ଞାନମୟ ଓ ଆନନ୍ଦ ସ୍ୱରୂପ । ହେ ରଘୁବୀର ! ଏହିକ୍ଷଣି ଆମ୍ଭେ ତୁମ୍ଭଙ୍କୁ ପୁନଃ ପୁନଃ ନମସ୍କାର କରୁଅଛୁଁ । ଆମ୍ଭେ ତୁମ୍ଭର ସ୍ୱରୂପ ଜାଣିବାକୁ ଅଭିଳାଷୀ ହୋଇଅଛୁଁ । ଯଥାର୍ଥତଃ ତୁମ୍ଭର ସ୍ୱରୂପ ଜାଣିପାରିଲେ କେବଳ ଆମ୍ଭେ ମୁକ୍ତିପଦ ଲାଭରେ ସମର୍ଥ ହେବୁ । (ମୁକ୍ତିକୋପନିଷଦ, ପୃ-୧-୨)

ମୁକ୍ତିକୋପନିଷଦ ଓଡିଆରେ ପ୍ରଥମ ଉପନିଷଦର ଅନୁବାଦ ଅଟେ । ମଧ୍ୟଯୁଗୀୟ ସାହିତ୍ୟରେ ଶାସ୍ତ୍ରର ଅନୁବାଦ ବିଶେଷ ପ୍ରଚଳନ ନଥିଲା । ପୁରାଣ ଓ ଭକ୍ତିଗ୍ରନ୍ଥର ଅନୁବାଦ ବହୁଳ ଦେଖାଯାଏ । ପ୍ରାଚୀନ କାବ୍ୟ ତଥା ବେଦ ବେଦାନ୍ତ ଉପନିଷଦର **ଅନୁବାଦ ପ୍ରାୟତଃ** ଦେଖାଯାଏ ନାହିଁ । ଶାସ୍ତ୍ର ଅନୁବାଦର ପରଂପରା ସୁଢ଼ଳଦେବଙ୍କ ମୁକ୍ତି କୋପନିଷଦ ଅନୁବାଦରୁ ଆରମ୍ଭ ହୁଏ । ଜଟିଳ ଶାସ୍ତ୍ରକୁ ଓଡିଆରେ ଅନୁବାଦ କରିବାର ଏହା ପ୍ରଥମ ପ୍ରଚେଷ୍ଟା । ପରେ ଏହି ପରଂପରାକୁ ବ୍ୟାପକ କରନ୍ତି ରାମଶଙ୍କର ରାୟ । ବାମଣ୍ଡାରେ ମଧ୍ୟ ସୁଢ଼ଳଦେବଙ୍କ ପରେ ସଚ୍ଚିଦାନନ୍ଦ ଦେବ, ବଳଭଦ୍ରଦେବ, ଜଳନ୍ଧର ଦେବ, ବିଦ୍ୟାରତ୍ନ, ଦୀନବଂଧୁ ଗଡନାୟକ ପ୍ରମୁଖ ପ୍ରାଚୀନ ସଂସ୍କୃତ କାବ୍ୟ, ଶାସ୍ତ୍ର ତଥା ବଙ୍ଗଳା ରଚନାବଳୀ ଅନୁବାଦରେ ନିଜର ସିଦ୍ଧି ପ୍ରକାଶ କରନ୍ତି । ବଙ୍ଗଳା କାବ୍ୟକବିତା ଅନୁବାଦରେ

ସୁଲୋଚନା ଦେଇ, ବ୍ରଜବନ୍ଧୁ ମିଶ୍ର, ରତ୍ନାକର ଶର୍ମା ବୃନ୍ଦାବନ ନାଥ ଶର୍ମା, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ କବି ଆଗ୍ରହ ପ୍ରକାଶ କରନ୍ତି ।

ମଣିରତ୍ନମାଳା (୧୮୮୯) ପାଠକଙ୍କୁ ସଂସ୍କୃତ ସାହିତ୍ୟର ମଣିମୟ ଉପଦେଶାବଳୀ ପ୍ରଶ୍ନୋତ୍ତର ଛଳରେ ଭେଟି ଦେବାରେ ସମର୍ଥ ହୋଇଅଛି ।

## ଅଳଙ୍କାର ବୋଧୋଦୟ

ଅଳଙ୍କାର ବୋଧୋଦୟ ସୁଢ଼ଳଦେବଙ୍କ ଏକ ଅପୂର୍ବ ସୃଷ୍ଟି । ଏହା ତାଙ୍କର ସଂସ୍କୃତ ଜ୍ଞାନର ପ୍ରକୃଷ୍ଟ ପ୍ରତିଫଳନ ବହନ କରେ । ବାକ୍ୟ ରଚନା ପାଟବକୁ ବିଶୁଦ୍ଧ କରିବାପାଇଁ ସେ ଏହି ପୁସ୍ତକ ପ୍ରଣୟନ କରିଥିବାର ଘୋଷାଣା କରନ୍ତି ''...ବର୍ତ୍ତମାନ ଆଉ ଉତ୍କଳ ଦେଶରେ ସଂସ୍କୃତଜ୍ଞ ବିରଳ ଥିବାରୁ ପ୍ରାୟ ଭାଷାଜ୍ଞମାନଙ୍କର ରଚନାରେ ଅନେକ ଅସୁବିଧା ଘଟେ । ଯେ ହେଉ ଆମ୍ଭେ ଏହି ସାହିତ୍ୟ ଦର୍ପଣକୁ ଭାଷା କରିବାରେ ପ୍ରବୃତ୍ତ ହେଲୁଁ ଯେ, ସ୍କୁଲସ୍ଥ ଛାତ୍ରମାନେ ଯେବେ ଏହାକୁ ଅଧ୍ୟୟନ କରନ୍ତି, ତେବେ ଅନାୟାସରେ ନିର୍ଦ୍ଦୋଶ ବାକ୍ୟ ରଚନା କରିବାରେ ସମର୍ଥ ହେବେ ।''(ଭୂମିକା) ଆଲୋଚ୍ୟ ପୁସ୍ତକଟି ତତ୍କାଳୀନ ବାମଣ୍ଡାର ଶିକ୍ଷାବିଭାଗରେ ପ୍ରଚଳିତ ଥିଲା ଏବଂ ମଧ୍ୟପ୍ରଦେଶରେ ଲାଇବ୍ରେରୀ ଓ ପ୍ରାଇଜ୍ ପୁସ୍ତକ ରୂପେ ମନୋନୀତ ହୋଇଥିଲା ।

'ଅଳଙ୍କାର ବୋଧୋଦୟ'ର ଲୋକପ୍ରିୟତା ହିଁ ଏହାର ମୂଲ୍ୟାୟନ କରେ । ରାଧାନାଥ ଏରୂପ ପୁସ୍ତକ ଉତ୍କଳ ଭାଷା କ'ଣ ବଙ୍ଗ ଭାଷାରେ ମଧ ଦେଖି ନଥିବା ସ୍ୱୀକାର କରନ୍ତି । ବିଶିଷ୍ଟ ସମାଲୋଚକ ନଟବର ସାମନ୍ତରାୟଙ୍କ ମତ ଏ ପ୍ରସଙ୍ଗରେ ପ୍ରଣିଧାନଯୋଗ୍ୟ : ''ପୁରାତନ ସାହିତ୍ୟର କ୍ରମ ତିରୋଧାନ ଓ ଆଧୁନିକ ସାହିତ୍ୟର କ୍ରମ ଉଦ୍‌ବର୍ତ୍ତନ ଏଇ ଯୁଗ-ସନ୍ଧିବେଳେ ଓଡ଼ିଆ ଭାଷାରେ ଏପରି ଏକ ସାହିତ୍ୟ ସମାଲୋଚନାତ୍ମକ ଅଳଙ୍କାର ଗ୍ରନ୍ଥର ଐତିହାସିକ ଆବଶ୍ୟକତା ଯେ ଯଥେଷ୍ଟ ଥିଲା, ତାହା ଆଦୌ ଅସ୍ୱୀକାର କରାଯାଇ ନପାରେ ।'' (ଓଡ଼ିଆ ସାହିତ୍ୟର ଇତିହାସ)

ଅଳଙ୍କାର ବୋଧୋଦୟର ବିଶେଷତ୍ୱ ପ୍ରଖ୍ୟାପନ ଛଳରେ ଉତ୍କଳ ଦୀପିକା (୨୧/୨୬)ରେ ଏକ ବିଜ୍ଞାପନ ପ୍ରଦାନ କରି ବାସୁଦେବ ଉଲ୍ଲେଖ କରନ୍ତି, ''ବାକ୍ୟାର୍ଥ ଜ୍ଞାନ ଅଳଙ୍କାର ଶାସ୍ତ୍ରରେ ପ୍ରାୟ ଭଲ ହୁଏ, ଅତଏବ ଏହି ଅଳଙ୍କାର ବୋଧୋଦୟରେ ଅଳଙ୍କାର ଶାସ୍ତ୍ରର ସାରାଂଶ ଉଦ୍ଧୃତ; ଏହା ଭାଷାଭିଳାଷୀ ସ୍କୁଲୀୟ ଛାତ୍ରମାନଙ୍କର ବାକ୍ୟାର୍ଥଜ୍ଞାନର ସୋପାନ ବୋଇଲେ ଅତ୍ୟୁକ୍ତି ହେବନାହିଁ; ବିଶେଷତଃ ଏହି ପୁସ୍ତକ ସଂସ୍କୃତାନଭିଜ୍ଞ ଉତ୍କଳୀୟ କବିମାନଙ୍କର ନିତାନ୍ତ ବାଞ୍ଛନୀୟ ହେବ ବୋଲି ଭରସା କରୁଁ ।''

ଅଳଙ୍କାର ବୋଧୋଦୟ ପ୍ରଣୟନ ସହିତ ସଂସ୍କୃତ ଶାସ୍ତ୍ରର ଭିତ୍ତିରେ ଓଡ଼ିଆ କାବ୍ୟସୌଧ ନିର୍ମାଣ ବାସୁଦେବଙ୍କର ଆଭିମୁଖ୍ୟ । ରୀତିଯୁଗର ଅବସାନ ପରେ

ଆଧୁନିକ ଯୁଗର ଆବିର୍ଭାବ । ଓଡ଼ିଶାର ବିଭିନ୍ନ ଗଡଜାତ ଅଞ୍ଚଳରେ ରୀତିଯୁଗୀୟ କାବ୍ୟ ଧାରାର ବିବର୍ତ୍ତିତ ରୂପ ଭାବରେ ଆଧୁନିକ ସାହିତ୍ୟର ସୃଷ୍ଟି । କିନ୍ତୁ ବାମଣ୍ଡାରେ ଭଞ୍ଜୀୟ କାବ୍ୟଧାରାର ପ୍ରତିଫଳନ ପରିଦୃଶ୍ୟମାନ ହୁଏନାହିଁ । ସଂସ୍କୃତ କାବ୍ୟଧାରାର ସମାନ୍ତରାଳରେ ବାମଣ୍ଡାର କାବ୍ୟଧାରା ପ୍ରତିଷ୍ଠିତ ହୁଏ । ଏହି କାବ୍ୟଧାରାକୁ ପରିପୁଷ୍ଟ ଓ ଶବଳିତ କରିବା ପାଇଁ ଅଳଙ୍କାର ବୋଧୋଦୟ ପ୍ରଧାନ ଅବଲମ୍ବନ । ଅଳଙ୍କାର ବୋଧୋଦୟ କେବଳ ଏକ ପୁସ୍ତକ ନୁହେଁ ବରଂ ଅଳଙ୍କାର ଶାସ୍ତ୍ରକୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ ଉପଲକ୍ଷ୍ୟେ ଏକ ଧାରା ସୃଷ୍ଟି କରିଛି । ଅଳଙ୍କାର ବୋଧୋଦୟ ପ୍ରଣୟନ ପୂର୍ବରୁ ଓଡ଼ିଶାରେ ସଂସ୍କୃତ ଅଳଙ୍କାର ଚର୍ଚ୍ଚାର ଏକ ସୁମହାନ ପରଂପରା ଅନୁସୃତ ହୋଇଥିଲା । ଉତ୍କଳୀୟ ଅଳଙ୍କାରିକମାନେ ସଂସ୍କୃତରେ ଅଳଙ୍କାର ପୁସ୍ତକମାନ ପ୍ରଣୟନ କରିବାକୁ ଶ୍ରେୟସ୍କର ମନେ କରୁଥିଲେ । ଅଳଙ୍କାର ବୋଧୋଦୟ ପୂର୍ବରୁ ଓଡ଼ିଆରେ ଯେଉଁ କେତୋଟି ଅଳଙ୍କାରଗ୍ରନ୍ଥ ରଚିତ ହୋଇଥିଲା ତା'ର ସମ୍ୟକ୍ ସୂଚନା ପ୍ରଦାନଦ୍ୱାରା ସଂଶିତ ପୁସ୍ତକର ମର୍ଯ୍ୟାଦା ପ୍ରତିପାଦନ କରାଯାଇପାରେ ।

ବକ୍ଷ୍ୟମାଣ ସମୟରେ ରଚିତ ସମସ୍ତ ଅଳଙ୍କାର ପୁସ୍ତକର ତଥ୍ୟ ସଂଗ୍ରହ ଏକ ଦୁରୂହ ବ୍ୟାପାର । ତଥାପି ବି ଉପଲବ୍ଧ ତଥ୍ୟ ଅନୁସାରେ ଅଳଙ୍କାର ବୋଧୋଦୟ ରଚନା ପୂର୍ବରୁ ଛଅଟି ବିଶିଷ୍ଟ ଅଳଙ୍କାର ଗ୍ରନ୍ଥ ପ୍ରଣୀତ ହୋଇଥିବା ଜଣାଯାଏ । ଉପେନ୍ଦ୍ର ଭଞ୍ଜଙ୍କ ରସପଞ୍ଚକ, ଚିତ୍ରକାବ୍ୟ ବନ୍ଧୋଦୟ ଓ ରସମଞ୍ଜରୀ, ପୀତାମ୍ବର ଅଗ୍ରଦେବଙ୍କ ରସ ଚିନ୍ତାମଣି, ଯଦୁମଣି ରାଉତରାୟଙ୍କ କବିକଳ୍ପଦ୍ରୁମ ଓ ଗଦାଧର ନାରାୟଣ ଭଞ୍ଜଙ୍କ ରସ ମୁକ୍ତାବଳୀ ପ୍ରଭୃତି ଗ୍ରନ୍ଥକୁ ଏପ୍ରସଙ୍ଗରେ ସ୍ମରଣ କରାଯାଇପାରେ ।

ଏ ସମସ୍ତ ପୁସ୍ତକର ସ୍ୱରୂପ ସଂସ୍କୃତ ଅଳଙ୍କାର ଗ୍ରନ୍ଥଦ୍ୱାରା ସୁନିୟନ୍ତ୍ରିତ । ପୁସ୍ତକଗୁଡ଼ିକ ମୁଖ୍ୟତଃ ରସତରଙ୍ଗିଣୀ, ସାହିତ୍ୟ ଦର୍ପଣ, କାବ୍ୟପ୍ରକାଶ, ପିଙ୍ଗଳ, କାମଶାସ୍ତ୍ର, କବି କଳ୍ପଲତା, ସାହିତ୍ୟ ରତ୍ନାକର, ଛନ୍ଦ ମଞ୍ଜରୀ, ଛନ୍ଦ ରତ୍ନାକର, ସଂଗୀତ କୌମୁଦୀ ପ୍ରଭୃତିକୁ ଅନୁସରଣ କରି ଗଢ଼ିଉଠିଛି । ଏତଦ୍‌ବ୍ୟତୀତ ଓଡ଼ିଆ ଅଳଙ୍କାର ଗ୍ରନ୍ଥ ସମୂହ ପରୋକ୍ଷରେ ରୂପ ଗୋସ୍ୱାମୀଙ୍କ (ଉଜ୍ଜଳ ନୀଳମଣି) ଏବଂ ଭାନୁଦତ୍ତଙ୍କ 'ରସ ମଞ୍ଜରୀ ଦ୍ୱାରା ଅନୁପ୍ରାଣିତ ହୋଇଥିବା ଅନୁମିତ ହୁଏ ।

ଏ ସମସ୍ତ ଅଳଙ୍କାର ଗ୍ରନ୍ଥକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଏମାନଙ୍କ ମଧ୍ୟରୁ ଜଣେ କେହି ନିଷ୍ଠାପର ଭାବେ କୌଣସି ଗୋଟିଏ ପ୍ରଚଳିତ ସଂସ୍କୃତ ଅଳଙ୍କାର ଗ୍ରନ୍ଥର ସାମଗ୍ରିକ ବିଷୟ ବସ୍ତୁକୁ ଉପସ୍ଥାପନା କରିନାହାଁନ୍ତି । ଏଗୁଡ଼ିକର ମୂଳଧ୍ୟେୟବସ୍ତୁ ରସ । ନାୟକ ନାୟିକାଭେଦ, ନାୟିକାଳଂକାର ଶୃଙ୍ଗାର ରସର ବିଭିନ୍ନ ଅନୁଭାବ ଓ ସଂଚାରୀଭାବ ବର୍ଣ୍ଣ୍ୟସ୍ଥିତି ପ୍ରଭୃତିର ଦୀର୍ଘ ଓ ବିସ୍ତୃତ ବର୍ଣ୍ଣନା ହିଁ ଗ୍ରନ୍ଥ ଗୁଡ଼ିକରେ

ପ୍ରଦତ୍ତ । ଉଦାହରଣ-ବିହୀନ ଲକ୍ଷଣ ଏବଂ ଲକ୍ଷଣ-ରହିତ ଉଦାହରଣ ଅଳଙ୍କାର ଶାସ୍ତ୍ରର ଗୂଢ଼ତତ୍ତ୍ୱ ପ୍ରଖ୍ୟାପନରେ ଅସମର୍ଥ ହୋଇଛି ।

ଏହି ଅଳଙ୍କାର ପୁସ୍ତକ ସମୂହର ମର୍ମ ଉଦଘାଟନ କରିବାକୁ ଗଲେ ନିମ୍ନୋକ୍ତ ବିଷୟ ଗୁଡିକ ସ୍ପଷ୍ଟ ହୋଇଥାଏ ।

(କ) ଓଡ଼ିଆ ଅଳଙ୍କାର ଗ୍ରନ୍ଥରେ ସଂସ୍କୃତପରି ଅଳଙ୍କାରର ଭେଦ ଉପଭେଦ ନିର୍ଣ୍ଣୟ ଓ ତାତ୍ତ୍ୱିକ ବିଶ୍ଳେଷଣ କୌଣସିଠାରେ ପରିଲକ୍ଷିତ ହୁଏନାହିଁ ।

(ଖ) ରସନିଷ୍ପତ୍ତି, ରସ ଆସ୍ୱାଦନ ପ୍ରକ୍ରିୟା, ରସ ସୂତ୍ରର ବ୍ୟାଖ୍ୟା,ଧ୍ୱନି ସ୍ଥାପନା ପ୍ରଦତ୍ତ କାବ୍ୟ ଲକ୍ଷଣର ଯୁକ୍ତିଯୁକ୍ତତା ପ୍ରଦର୍ଶନ, ଦୋଷ-ଗୁଣ-ଅଳଙ୍କାରାଦିର ପୁଂଖାନୁପୁଂଖ ବିଶ୍ଳେଷଣ ପ୍ରତି ଏଗୁଡ଼ିକ ନିରବତା ଅବଲମ୍ବନ କରିଛନ୍ତି ।

(ଗ) କାବ୍ୟିକ ରସକୁ ପ୍ରାଧାନ୍ୟ ପ୍ରଦାନ ସତ୍ତ୍ୱେ ବୌଦ୍ଧିକ ବିଶ୍ଳେଷଣର ଅଭାବ ପରିଦୃଶ୍ୟ ହୁଏ ।

(ଘ) କାବ୍ୟାତ୍ମାକୁ ସ୍ୱୀକୃତି ପ୍ରଦାନ କରି ମଧ କାବ୍ୟର ଆତ୍ମିକ ବିଶେଷତ୍ୱ ଅପେକ୍ଷା ଆଙ୍ଗିକ ଚମତ୍କୃତି ସଂପାଦନ ପ୍ରତି ଏମାନେ ଗୁରୁତ୍ୱ ଦେଇଥିବାର ସୁସ୍ପଷ୍ଟ ।

(ଙ) ରସ, ଅଳଙ୍କାର, ରୀତି, ଧ୍ୱନି, ବକ୍ରୋକ୍ତି ଓ ଔଚିତ୍ୟବାଦର ଖଣ୍ଡନ ମଣ୍ଡନର ଚିତ୍ରନାହିଁ ।

ଏ ସମସ୍ତ କାରଣଗୁଡିକ ବିଶ୍ଳେଷଣ କଲେ ଜଣାଯାଏ ଓଡ଼ିଆ ଅଳଙ୍କାରିକମାନଙ୍କର ରସ ଓ ଅଳଙ୍କାର ବ୍ୟତୀତ ଅନ୍ୟାନ୍ୟ ମତବାଦ ସହିତ କୌଣସି ସଂପର୍କ ନାହିଁ । ସଂସ୍କୃତ ଅନୁସୃତ ଓଡିଆ ଅଳଙ୍କାର ସାହିତ୍ୟ ସଂସ୍କୃତ ଅନୁରୂପ ନହୋଇ ସମସାମୟିକ ଓଡ଼ିଆ କବିମାନସର ଅସ୍ପଷ୍ଟ ପ୍ରତିଧ୍ୱନି ମାତ୍ର ତୋଳିଧରିଛି । (ଓଡ଼ିଆ କାବ୍ୟ-କୌଶଳ : ଡଃ ସୁଦର୍ଶନ ଆଚାର୍ଯ୍ୟ)

ଏହି ପ୍ରେକ୍ଷାପଟରେ ଓଡ଼ିଆ ଅଳଙ୍କାର ଶାସ୍ତ୍ରର ବିବର୍ତ୍ତିତ ଧାରାକୁ ଆଲୋଚନା କରାଯାଇପାରେ । ବାସୁଦେବ ସୁଢ଼ଳଦେବଙ୍କ ପ୍ରଣୀତ 'ଅଳଙ୍କାର ବୋଧୋଦୟ' ଉଲ୍ଲିଖିତ ସମସ୍ତ ସୀମିତତାକୁ ଅତିକ୍ରମ କରି ଏକ ପୂର୍ଣ୍ଣାଙ୍ଗ ଅଳଙ୍କାର ଗ୍ରନ୍ଥର ଆବଶ୍ୟକତାକୁ ପୂରଣ କରେ । ଗଦ୍ୟ ଛଳରେ ଅଳଙ୍କାରର ପ୍ରତିଟି ବିଭାବକୁ ବିଶ୍ଳେଷଣ କରାଯାଇଛି । ସଂସ୍କୃତ ଅଳଙ୍କାର ଗ୍ରନ୍ଥ ସାହିତ୍ୟ ଦର୍ପଣକୁ ଅନୁସରଣ କରି ଅଳଙ୍କାର ବୋଧୋଦୟ ପ୍ରସ୍ତୁତ ହୋଇଛି । କେବଳ ଷଷ୍ଠ ପରିଚ୍ଛେଦରେ ପ୍ରଦତ୍ତ ଅଳଙ୍କାର ନିରୂପଣ ପ୍ରସଙ୍ଗ ଜୟଦେବ କୃତ ଚନ୍ଦ୍ରାଲୋକ ଅନୁସରଣରେ ଗଠିତ ।

ସୁଢ଼ଳଦେବ ଜଣେ ବହୁଦର୍ଶୀ ବିଦ୍ୱାନ । ସଂସ୍କୃତ ଅଳଙ୍କାର ଶାସ୍ତ୍ର ଉପରେ ତାଙ୍କର ଗଭୀର ପ୍ରବେଶଥିଲା । ସେ ସାହିତ୍ୟ ଦର୍ପଣକୁ ତନ୍ନତନ୍ନ ଅଧ୍ୟୟନ କଲାପରେ ଉପଯୋଗୀ ଅଂଶ ସମୂହକୁ ଗ୍ରହଣ କରିଛନ୍ତି । ଉଦାହରଣ ପ୍ରଦାନ ସମୟେ ଯଥାସାଧ

ଓଡିଆ କବିତାରୁ ଦୃଷ୍ଟାନ୍ତ ଗ୍ରହଣ କରିଛନ୍ତି । ନମିଳିଲେ ସଂସ୍କୃତ ଉଦାହରଣ ଦେବାକୁ ବାଧ ହୋଇଛନ୍ତି । ସାହିତ୍ୟ ଦର୍ପଣ ସହିତ ଅଳଙ୍କାର ବୋଧୋଦୟର ତୁଳନାତ୍ମକ ଅଧ୍ୟୟନରୁ ଏହା ସ୍ପଷ୍ଟ ହୋଇଥାଏ ।

ସାହିତ୍ୟ ଦର୍ପଣରେ ଦଶଟି ପରିଚ୍ଛେଦ ଥିଲାବେଳେ ସୁଢ଼ଳଦେବ ସାତୋଟି ପରିଚ୍ଛେଦରେ ସୀମିତ କରିଛନ୍ତି ବୋଧୋଦୟକୁ । ଦର୍ପଣର ପଞ୍ଚମ ପରିଚ୍ଛେଦ (ବ୍ୟଞ୍ଜନା ନିରୂପଣ), ଷଷ୍ଠ ପରିଚ୍ଛେଦ (ଦୃଶ୍ୟ ଶ୍ରବ୍ୟ କାବ୍ୟ ନିରୂପଣ) ଓ ନବମ ପରିଚ୍ଛେଦ (ରୀତିବିଚାର)କୁ ସୁଢ଼ଳଦେବ ଗ୍ରହଣ କରି ନାହାନ୍ତି । ପରିଚ୍ଛେଦ ବିଭାଜନରେ କିଛିଟା ସ୍ୱାତନ୍ତ୍ର ଦେଖାଯାଏ । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ ଯଥାକ୍ରମେ ଅବତରଣିକା, ବାକ୍ୟସ୍ୱରୂପ ନିରୂପଣ, ରସନିରୂପଣ ଉଭୟ ପୁସ୍ତକରେ ଦେଖାଯାଏ । ଦର୍ପଣର ଚତୁର୍ଥ ପରିଚ୍ଛେଦରେ ଧ୍ୱନି ଗୁଣୀଭୂତ ବ୍ୟଙ୍ଗ ଭେଦ ନିରୂପଣ ଥିଲାବେଳେ ସୁଢ଼ଳଦେବ ସପ୍ତମ ପରିଚ୍ଛେଦରେ ପ୍ରଦାନ କରିଛନ୍ତି । ଦୋଷ ନିରୂପଣ ଦର୍ପଣର ସପ୍ତମ ପରିଚ୍ଛେଦରେ ଥିଲାବେଳେ ବୋଧୋଦୟର ଚତୁର୍ଥ ପରିଚ୍ଛେଦରେ ରହିଛି । ଗୁଣନିରୂପଣ ଦର୍ପଣର ଅଷ୍ଟମ ପରିଚ୍ଛେଦରେ ଦେଖାଗଲାବେଳେ ବୋଧୋଦୟର ପଞ୍ଚମ ପରିଚ୍ଛେଦରେ ସ୍ଥାନ ପାଇଛି ।

ସୁଢ଼ଳଦେବ ବୋଧୋଦୟର ପରିଚ୍ଛେଦମାନଙ୍କରେ ଯଥାକ୍ରମେ ଅବତରଣିକା, ବାକ୍ୟସ୍ୱରୂପ, ରସ, ଦୋଷନିରୂପଣ, ଗୁଣ, ଅଳଙ୍କାର ଓ ଧ୍ୱନିର ବିଶ୍ଳେଷଣ କରିଛନ୍ତି । ବାକ୍ୟ ଗଠନରେ ନାଟକ, ବ୍ୟଞ୍ଜନା ଓ ରୀତିର ପ୍ରତ୍ୟକ୍ଷ ସଂପର୍କ ନଥିବାରୁ ସେ ପରିତ୍ୟାଗ କରିଛନ୍ତି । ଦର୍ପଣର ଅଳଙ୍କାର ପରିଚ୍ଛେଦ ବିସ୍ତୃତ ଥିବାରୁ ଓ ଦୁର୍ବୋଧ ଥିବାରୁ ଚନ୍ଦ୍ରାଲୋକ ଅବଲମ୍ବନରେ ଉପମା ଅଳଙ୍କାରାଦି ଆଲୋଚିତ ହୋଇଛି ।

ସାହିତ୍ୟ ଦର୍ପଣର ପ୍ରଥମ ପରିଚ୍ଛେଦର ସଂକ୍ଷିପ୍ତ ସାରବସ୍ତୁକୁ ବୋଧୋଦୟରେ ପରିବେଷଣ କରାଯାଇଛି । ଭୂମିକାରେ ସୁଢ଼ଳଦେବ ଘୋଷଣା କରିଛନ୍ତି "ଏହି ସାହିତ୍ୟ ଦର୍ପଣ ଅତିଶୟ ସରସ ଓ ସ୍ଥାନେ ସ୍ଥାନେ ଯୁକ୍ତିତର୍କ ଘଟିତ ହେବାରୁ, ତହିଁରୁ ଆମ୍ଭେ ଯେ ସବୁ କଠିନାଂଶ ଓ ଅଶ୍ଳୀଳ ଦୃଷ୍ଟାନ୍ତମାନଙ୍କୁ ତ୍ୟକ୍ତକରି କେବଳ ସୁବୋଧ ହେବା ନିମିତ୍ତ ସାରସାର ପଦାର୍ଥମାନଙ୍କୁ ଉଦ୍ଧୃତ କଲୁ ।" ଏହି ସ୍ୱୀକାରୋକ୍ତି ଅଳଙ୍କାର ବୋଧୋଦୟକୁ ସୁନିୟନ୍ତ୍ରିତ ଓ ସୁସଙ୍କଳିକ ଏକ ଉତ୍କର୍ଷ ଅଳଙ୍କାର ପୁସ୍ତକର ମର୍ଯ୍ୟାଦା ପ୍ରଦାନ କରେ ।

ସାହିତ୍ୟ ଦର୍ପଣର ଅନୁବାଦ କରିନାହାନ୍ତି ସୁଢ଼ଳଦେବ ବରଂ ଅନେକତ୍ର ଅନୁସରଣ କରିଛନ୍ତି । ଅନ୍ୟାନ୍ୟ ଆଳଙ୍କାରିକମାନଙ୍କ ବିତର୍କମୟ ବିବୃତ୍ତିକୁ ଉପେକ୍ଷା କରି ଉପଯୋଗୀ ସିଦ୍ଧାନ୍ତଗୁଡ଼ିକୁ ସେ ଗ୍ରହଣ କରିଛନ୍ତି । ସ୍ଥଳ ବିଶେଷରେ ଓଡ଼ିଆ ଉଦାହରଣ ଦେବାକୁ ଯତ୍ନ କରିଛନ୍ତି । ଅଭାବଦୃଷ୍ଟେ ଅନେକତ୍ର ସଂସ୍କୃତ ଦୃଷ୍ଟାନ୍ତ ଗ୍ରହଣ କରିଛନ୍ତି । ଅଯଥା ବାକ୍ ପଲ୍ଲବନକୁ ପରିହାର କରି ସେ ବୈଜ୍ଞାନିକ ପଦ୍ଧତିରେ

ବର୍ଗୀକରଣ ଗୁଡିକ ଉପସ୍ଥାପନ କରିଛନ୍ତି । ସଂସ୍କୃତ ଉଦାହରଣ ଗୁଡିକ ଯଥାସାଧ ଓଡ଼ିଆରେ ଅନୁବାଦ କରିଛନ୍ତି । ଅନେକତ୍ର ପଦ୍ୟାତ୍ମକ ଅନୁବାଦ ନିରସ ଅଳଙ୍କାର ଶାସ୍ତ୍ରକୁ ଶ୍ରୁତିମଧୁର ଓ ଆକର୍ଷଣୀୟ କରିଛି । ଏହାର କେତେକ ଉଦାହରଣ ପ୍ରଦତ୍ତ କରାଗଲା ।

ଦୋଷନିରୂପଣ ପ୍ରସଙ୍ଗରେ (୧) ଅନୁଚିତାର୍ଥର ଉଦାହରଣ ସାହିତ୍ୟଦର୍ପଣରେ– ''ଶୂରା ଅମରତା ଯାନ୍ତି ପଶୁଭୂତା ରଣାଧ୍ୱରେ'' (ସାହିତ୍ୟ ଦର୍ପଣ ପୃ-୫୯୬)

ଅଳଙ୍କାର ବୋଧୋଦୟରେ : ପଶୁଭୂତ ହୋଇ ବୀରମାନେ ରଣାଧ୍ୱରେ ଅମରତାକୁ ଲଭନ୍ତି ମହା ଆନନ୍ଦରେ । (ବା : ଗ୍ର– ପୃ-୧୦୨)

(୨) ଭଗ୍ନ ପ୍ରକମତା ଦୋଷ ସାହିତ୍ୟ ଦର୍ପଣରେ–

''ଏବ ମୁକ୍ତୋ ମନ୍ତ୍ରି ମୁଖୈରାବଣଃ ପ୍ରତ୍ୟଭାଷତ ।'' (ସା:ଦ-ପୃ-୬୪୦)

ଅଳଙ୍କାର ବୋଧୋଦୟରେ-

''ଯୁଦ୍ଧ ନୋହୁ ବୋଲି ମନ୍ତ୍ରୀ ଉତ୍ତରକୁ ଦେଲେ
କ୍ରୋଧରେ ରାବଣ ପ୍ରତିଭାଷଣକୁ ଗଲେ ।'' (ବା: ଗ୍ର:-୧୦୬)

(୩) ଅନବୀକୃତା ଦୋଷ–

ସାହିତ୍ୟ ଦର୍ପଣରେ'' - ସଦା ଚରିତ ଖେ ଭାନୁଃ
ସଦା ବହତି ମାରୁତଃ
ସଦା ଧରେ ଭୁବଂଶେଷଃ
ସଦା ଧୀରୋ ୧ ବିକତ୍ଥନଃ (ସା:ଦ-ପୃ-୬୫୩)

ଅଳଙ୍କାର ବୋଧାଦୟ''- ସଦା ଆକାଶରେ ଭାନୁସଞ୍ଚରେ
ସଦା ଯେମନ୍ତ ବହନ୍ତି ସମୀରେ
ସଦା ଶେଷ ଧରା ଧରନ୍ତି ଶିରେ
ସଦା ସୁଜନ ଗର୍ବକୁ ନ କରେ ।''(ବା:ଗ୍ର-ପୃ-୧୧୦)

ଅଳଙ୍କାର ବୋଧାଦୟର ଅନେକତ୍ର ସୁଢ଼ଳଦେବ ଦର୍ପଣର ଅଶ୍ଳୀଳ ଦୃଷ୍ଟାନ୍ତ ସମୂହକୁ ପରିତ୍ୟାଗ କରିଛନ୍ତି । ଦ୍ୱିତୀୟ ପରିଚ୍ଛେଦରେ ବାକ୍ୟ ସ୍ୱରୂପ ନିରୂପଣ ପ୍ରସଙ୍ଗରେ ଆର୍ଥୀ ବ୍ୟଞ୍ଜନାରେ ଉଦାହରଣ ରୂପେ ଦର୍ପଣରେ (ପୃ-୭୧) ବିରହିଣୀ ନାୟିକାର ସଖୀ ନିକଟରେ ପତିର ବିରହ କାମ ଅଭିଳାଷ ପ୍ରଭୃତି ବର୍ଣ୍ଣିତ ଏବଂ ବ୍ୟଙ୍ଗାର୍ଥରେ ଅନ୍ୟ କାମୁକ ପଠାଇବାକୁ ନିର୍ଦ୍ଦେଶ । ସୁଢ଼ଳଦେବ ଏହାକୁ ପରିତ୍ୟାଗ କରି ଛାତ୍ରର ଛାତ୍ର ସହିତ ମାଷ୍ଟ୍ର•ନଥିବା ଓ ପରୀକ୍ଷା ନଦେଲେ ପିତା କ୍ରୋଧ କରିବେ ଆଦି ବର୍ଣ୍ଣନା କରିଛନ୍ତି । ଏବଂ ବ୍ୟଙ୍ଗାର୍ଥଦ୍ୱାରା ଅନ୍ୟ ଏକ ମାଷ୍ଟର ନିଯୁକ୍ତିର ଇଚ୍ଛା ପ୍ରକାଶ ପାଇଛି ।

ବୋଧବ୍ୟ ସମ୍ବନ୍ଧରୁ ଆର୍ଥୀ ବ୍ୟଞ୍ଜନା କ୍ରମେ ଦର୍ପଣରେ (ପୃ-୭୨) ନାୟିକାର ଦୂତୀକୁ ଅଧମନାୟକ ନିକଟକୁ ପ୍ରେରଣ, ଦୂତୀର ନାୟକ ସହ ସହବାସ ପରେ ସ୍ନାନ ପରେ ପ୍ରତ୍ୟାବର୍ତ୍ତନ ଓ ନାୟିକାର ଦୂତୀକୁ ଦୋଷାରୋପ ପ୍ରଭୃତି ବର୍ଣ୍ଣିତ ହେଲାବେଳେ ସୁଢ଼ଳଦେବ ଛାତ୍ର ପ୍ରତି ଅଧ୍ୟାପକର ବକ୍ତବ୍ୟ ଆଦି ଉପାଦେୟ ପ୍ରସଙ୍ଗର ଅବତାରଣା କରିଛନ୍ତି । (ବାସୁଦେବ ଗ୍ରନ୍ଥାବଳୀ-ପୃ-୯୨)

ସୁଢ଼ଳଦେବ ଅଶ୍ଳୀଳତା ବିଧ୍ୱଂସିନୀ ଶିବୀରର ସର୍ବଶ୍ରେଷ୍ଠ ଯୋଦ୍ଧା । ତାଙ୍କ ସାହିତ୍ୟରେ ଅଶ୍ଳୀଳତାକୁ ସେ କଦାଚିତ ସ୍ଥାନ ଦେଇ ନାହାନ୍ତି । ବିଜୁଳି ପ୍ରକାଶକରି ଯିଏ ଭଞ୍ଜ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରୁ ଅଶ୍ଳୀଳତା ନିର୍ମୂଳ କରିବାର ଲକ୍ଷ୍ୟ ପୋଷଣ କରିଥିଲେ ସିଏ ଭାଷା ସାହିତ୍ୟର ଉନ୍ନତିକଳ୍ପେ ରଚିତ ଅଳଙ୍କାର ପୁସ୍ତକରେ ଅଶ୍ଳୀଳ ଉଦାହରଣକୁ ପ୍ରଶ୍ରୟ ଦିଅନ୍ତେ କିପରି ?

ନାୟିକାମାନଙ୍କ ପ୍ରକାର ଭେଦରେ ଦର୍ପଣରେ ଅଶ୍ଳୀଳ ଆଖ୍ୟାନ ମାନ ବିବୃତ ହୋଇଛି । ସୁଢ଼ଳଦେବ ସଜ୍ଞାନ ଚିତ୍ତରେ ସେ ସମସ୍ତକୁ ଉପେକ୍ଷା କରି ବିଭିନ୍ନ ନାୟିକାର ପ୍ରକାର ଭେଦକୁ ବର୍ଣ୍ଣନା କରିଛନ୍ତି ।

ଦର୍ପଣରେ ଭରତ ମୁନିଙ୍କ ପ୍ରଦତ୍ତ ଦଶମ ରସ ''ବତ୍ସଳ''ର ସୂଚନା ପ୍ରଦତ୍ତ ହୋଇଛି । ସୁଢ଼ଳଦେବ ସଂପୂର୍ଣ୍ଣ ରୂପେ ଏହାକୁ ପରିହାର କରିଛନ୍ତି ।

ଧ୍ୱନି ପ୍ରସଙ୍ଗରେ ଓଡ଼ିଆ ଦୃଷ୍ଟାନ୍ତ ଅଭାବରୁ ଅନେକତ୍ର ଦର୍ପଣର ଦୃଷ୍ଟାନ୍ତମାନ ଗୃହୀତ ହୋଇଛି ।

ଅଳଙ୍କାର ବୋଧୋଦୟର ଷଷ୍ଠ ପରିଚ୍ଛେଦରେ ଅଳଙ୍କାର ପ୍ରସଙ୍ଗ ବର୍ଣ୍ଣିତ । ଏହା ମୁଖ୍ୟତଃ ଚନ୍ଦ୍ରାଲୋକଃ ଅନୁସରଣରେ ପ୍ରସ୍ତୁତ । ଦର୍ପଣକାର ପ୍ରାଚୀନ ପରଂପରାନୁଯାୟୀ 'ପୁନରୁକ୍ତ ବଦାଭାସ'କୁ ଶବ୍ଦାଳଙ୍କାର ପୂର୍ବରୁ ସ୍ଥାନ ଦେଇଛନ୍ତି । କିନ୍ତୁ ପ୍ରକାଶକାରଙ୍କ ମତରେ ଏହା ଉଭୟାଳଙ୍କାର ହୋଇଥିବାରୁ ଏହାକୁ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ମଧ୍ୟରେ ରଖିବା ଉଚିତ । ସୁଢ଼ଳଦେବ ଶବ୍ଦର ଚମତ୍କାରୀତା ଏହି ଅଳଙ୍କାରର ମୁଖ୍ୟ ବିଭାବ ହୋଇଥିବାରୁ ଶବ୍ଦାଳଙ୍କାର ପ୍ରାରମ୍ଭରେ 'ପୁନରୁକ୍ତ ବଦାଭାସର' ବର୍ଣ୍ଣନା ଦେଇଛନ୍ତି ।

ଅଳଙ୍କାର ପରିଚ୍ଛେଦରେ ସୁଢ଼ଳଦେବଙ୍କ ବକ୍ତବ୍ୟ ସୁସ୍ପଷ୍ଟ । କେତେକ ଦୃଷ୍ଟାନ୍ତକୁ ବାଦ ଦେଲେ ପ୍ରାୟତଃ ଓଡ଼ିଆରୁ ଉଦାହରଣ ପ୍ରଦାନ କରିଛନ୍ତି । ଏପରିକି ''ଚିତ୍ରୋତ୍ପଳା' କାବ୍ୟ ରଚନା ସମୟେ ସେ ବିଭିନ୍ନ ଅଳଙ୍କାରକୁ ନିର୍ଦ୍ଦେଶ କରିଛନ୍ତି । ଅଳଙ୍କାର ପରିଚ୍ଛେଦ ସାଧାରଣଙ୍କ ବ୍ୟବହାର ଉପଯୋଗୀ ହୋଇପାରିଛି ।

ବକ୍ଷ୍ୟମାଣ ଅଧ୍ୟୟନର ନିଷ୍କର୍ଷ ରୂପେ ଅଳଙ୍କାର ବୋଧୋଦୟକୁ ଓଡ଼ିଆରେ ରଚିତ ପ୍ରଥମ ପୂର୍ଣ୍ଣାଙ୍ଗ ଅଳଙ୍କାର ପୁସ୍ତକର ମାନ୍ୟତା ପ୍ରଦାନରେ ଅସଙ୍ଗତି କିଛିନାହିଁ ।

ଅଳଙ୍କାର ବୋଧୋଦୟ ପୂର୍ବରୁ ରଚିତ ଅଳଙ୍କାର ପୁସ୍ତକ ସମୂହ କବିତାକାରେ ରଚିତହୋଇ ମୁଖ୍ୟତଃ ବିଭିନ୍ନ ରସକୁ ପ୍ରତିପାଦନ କରିଛନ୍ତି । ନିର୍ଦ୍ଦୋଷ ବାକ୍ୟରଚନା ପ୍ରତି ଏମାନଙ୍କର ଦୃଷ୍ଟିଭଙ୍ଗୀ ଏକଦେଶଦର୍ଶୀ । ସାମଗ୍ରିକ ଭାବେ ବାକ୍ୟସ୍ୱରୂପ ନିରୂପଣରେ ଏମାନେ ଅସମର୍ଥ । ଦୋଷ-ଗୁଣ-ଧ୍ୱନି- ଅଳଙ୍କାରର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ମାଧ୍ୟମରେ ଅଳଙ୍କାର ବୋଧୋଦୟ ଓଡ଼ିଆ ସାହିତ୍ୟର ପ୍ରଥମ ଅଳଙ୍କାର ପୁସ୍ତକର ମର୍ଯ୍ୟାଦା ଲାଭ କରେ । ସଂସ୍କୃତ କାବ୍ୟାଦର୍ଶରେ ଓଡ଼ିଆ କାବ୍ୟକୁ ନିର୍ଦ୍ଦୋଷ ଭାବେ ଗଢ଼ିବା ଅଳଙ୍କାର ବୋଧୋଦୟର ଆଭିମୁଖ୍ୟ । ଏ ଆଭିମୁଖରେ ଏହା ସଫଳ ହୋଇଛି । ଏହାକୁ ପ୍ରଥମ ଅଳଙ୍କାର ପୁସ୍ତକର ମାନ୍ୟତା ଉତ୍କଳ ଦୀପିକା, ସଂବାଦ ବାହିକା, ସଂବଲପୁର ହିତୈଷିଣୀ, ସଂସ୍କାରକ, ଶିକ୍ଷାବଂଧୁ ପ୍ରଭୃତି ପତ୍ରିକା ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀରମୋହନ, ଭୋଳାନାଥ ସାମନ୍ତରାୟ, ବିଜୟ ଚନ୍ଦ୍ର ମଜୁମଦାର, ନୀଳମଣି ବିଦ୍ୟାରତ୍ନ, ରାମକୃଷ୍ଣ ସାହୁ, ମାୟାଧର ମାନସିଂ, ନଟବର ସାମନ୍ତରାୟ ପ୍ରମୁଖ ମନିଷୀ ପ୍ରଦାନ କରନ୍ତି ।

ଅଳଙ୍କାରବୋଧୋଦୟର ଆଦର୍ଶରେ ଅନୁପ୍ରାଣିତହୋଇ ବାମଣ୍ଡାରେ ଅନେକ ଅଳଙ୍କାର ପୁସ୍ତକ ପ୍ରକାଶ ଲଭିଥିଲା । ଏ ସମସ୍ତର ସଂକ୍ଷିପ୍ତ ସୂଚନା ଏ ପ୍ରସଙ୍ଗରେ ପ୍ରଦାନ କରାଗଲା ।

**୧ । ଅଳଙ୍କାର ଚନ୍ଦ୍ରିକା : (ବାମଣ୍ଡା-୧୮୮୭) :** ବାସୁଦେବଙ୍କ ପରାମର୍ଶ କ୍ରମେ ତାଙ୍କର ଶିକ୍ଷାଗୁରୁ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ଅଳଙ୍କାର ଚନ୍ଦ୍ରିକା ପ୍ରକାଶ କରନ୍ତି । ସଇଁତିରିଶ ପୃଷ୍ଠାର ଏହି ପୁସ୍ତକରେ କବିତାଛନ୍ଦରେ ଅଳଙ୍କାରର ପ୍ରକାରଭେଦ ଓ ସ୍ୱରୂପ ବର୍ଣ୍ଣିତ । ଏହା "ଚନ୍ଦ୍ରାଲୋକ" ଅବଲମ୍ବନରେ ରଚିତ ।

"ଅର୍ଥ ଅଳଙ୍କାର ଏଥି ହୋଇବ ବର୍ଣ୍ଣିତ
ସମସ୍ତ ମତରେ ଯେହୁ ହୋଇଛି ସମ୍ମତ ।
ଅନେକ ପ୍ରକାରେ ଏକ ଅଳଙ୍କାର ମାନ
ବହୁତ ଅଛନ୍ତି କିଛି କରିବା ଗ୍ରଥନ ।
ଲକ୍ଷ୍ୟଲକ୍ଷଣ ସଂଗ୍ରହ ହୋଇବ ଏ ଗ୍ରନ୍ଥ
ଅଳଙ୍କାର ମାର୍ଗେ କ୍ଲେଶ ନ ଲଭିବ ପାନ୍ଥ ।
ଚନ୍ଦ୍ରାଲୋକ ଗ୍ରନ୍ଥ ମୁଖ୍ୟ ଅଳଂଙ୍କାର ମାନ
ଅନ୍ୟଠାରୁ କିଛି ଏଥି ହୋଇବ ବର୍ଣ୍ଣନ ।
ବିଶଦତା ମାତ୍ର ଏଥି ହେବ ପ୍ରୟୋଜନ
ଗ୍ରନ୍ଥସ୍ୱଭାବ କାଠିନ୍ୟ ଧୀରେ ଗୁଣଘେନ ।"

ସ୍କୁଲ ଛାତ୍ରମାନଙ୍କ ନିମନ୍ତେ 'ଅଳଙ୍କାର ଚନ୍ଦ୍ରିକା' ଏକ ଉପାଦେୟ ପୁସ୍ତକ ।

୨ । **ଦୋଷ ଦର୍ଶନ–** ବିଜୁଳି ଇନ୍ଦ୍ରଧନୁ କଳହର ପୃଷ୍ଠପଟରେ ଦୋଷଦର୍ଶନ ରଚିତ ହୋଇଥିଲେ ମଧ୍ୟ ସଂସ୍କୃତ କାବ୍ୟାଦର୍ଶ ଓ ଅଳଙ୍କାର ବୋଧୋଦୟ ଥିଲା ଏହାର ଆଦି ପ୍ରେରଣା ଭୂମି । ଦମୋଦର ମିଶ୍ରଙ୍କ ଦ୍ୱାରା ରଚିତ ଏହି ପୁସ୍ତକ ବାମଣ୍ଡା ସୁଢ଼ଳପ୍ରେସରୁ ୧୮୯୫ରେ ପ୍ରକାଶ ଲଭେ । 'ବିଜୁଳି'ରେ ପ୍ରଦର୍ଶିତ ବିଭିନ୍ନ ଦୋଷକୁ ଏକତ୍ରିତ କରି ଏବଂ କିଛି ନୂତନ ଦୋଷ ସଂଯୋଜନ କରି ଦାମୋଦର ମିଶ୍ର ଦୋଷଦର୍ଶନ ପ୍ରସ୍ତୁତ କରନ୍ତି । ଦୋଷ ନିରୂପଣ କ୍ଷେତ୍ରରେ ଦାମୋଦର ମିଶ୍ର ସଂସ୍କୃତ କାବ୍ୟାଦର୍ଶକୁ ଅନୁସରଣ କରିଛନ୍ତି । ମୁଖ୍ୟତଃ ଅଳଙ୍କାର ବୋଧୋଦୟ ଦ୍ୱାରା ସୃଷ୍ଟି ହୋଇଥିବା ପରମ୍ପରାକୁ ସମୃଦ୍ଧ କରିବାରେ ଦୋଷଦର୍ଶନ ଏକ ସୁବର୍ଣ୍ଣ ସଂଯୋଜନ ।

୩ । **ଅଳଙ୍କାର ସାର–** ବାସୁଦେବଙ୍କ ସାହିତ୍ୟିକ ପୁତ୍ର ସଚ୍ଚିଦାନନ୍ଦ ଦେବ ପିତାଙ୍କର ଅଳଙ୍କାର ଶାସ୍ତ୍ରର ଅଧ୍ୟୟନ ସହିତ ଏହି ପରମ୍ପରାକୁ ପରିପୁଷ୍ଟ କରିଛନ୍ତି । ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ସଚ୍ଚିଦାନନ୍ଦ ଅଳଙ୍କାର ସାର ରଚନା କରନ୍ତି । ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରେ ୧୮୯୯ ଖ୍ରୀ:ରେ ପୁସ୍ତକଟି ପ୍ରଥମେ ପ୍ରକାଶ ଲଭେ । ପୁସ୍ତକର ଅନେକ ସଂସ୍କରଣ ସହିତ ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀର ୩ୟ ସଂସ୍କରଣରେ ମଧ୍ୟ ଅଳଙ୍କାର ସାର ସ୍ଥାନିତ ହୁଏ । ବିଜୟ ଚନ୍ଦ୍ର ମଜୁମଦାରଙ୍କ ଭାଷାରେ ''ଶ୍ରୀମାନ୍ ଯୁବରାଜ ସଚ୍ଚିଦାନନ୍ଦ ଏହି ଗ୍ରନ୍ଥ ପ୍ରଣୟନଦ୍ୱାରା 'ଅଳଙ୍କାର ବୋଧୋଦୟ'ର ଗୌରବ ବର୍ଦ୍ଧନ କରି ଉତ୍କଳ ସାହିତ୍ୟ ଜଗତରେ ପିତାଙ୍କ ପଦାନୁବର୍ତ୍ତୀ ହୋଇ ଖ୍ୟାତିଲାଭ କଲେ ।'' (ମନ୍ତବ୍ୟ-ଅଳଙ୍କାର ସାର)

ଅଳଙ୍କାର ବୋଧୋଦୟର କେତେକ ବିଷୟ ଏଥିରେ ସଂକ୍ଷିପ୍ତ ଭାବରେ ଅବତାରଣା କରାଯାଇଛି । ତୃତୀୟ ଓ ଚତୁର୍ଥ ପରିଚ୍ଛେଦରେ ଯଥାକ୍ରମେ ନାଟକ ପ୍ରକରଣ ଓ ଛାନ୍ଦ ଓ ଯତିର ଲକ୍ଷଣ ଆଦି ବିଷଦ୍ ଭାବେ ବର୍ଣ୍ଣିତ ହୋଇଛି । ଏ ଦୁଇଟି ପରିଚ୍ଛେଦ ବୋଧୋଦୟ ଅପେକ୍ଷା ଅତିରିକ୍ତ । ଏହି ଅଳଙ୍କାର ପୁସ୍ତକକୁ ସଚ୍ଚିଦାନନ୍ଦ ଅଧିକ ପ୍ରୟୋଗାତ୍ମକ କରିଛନ୍ତି ।

୪ । **ଉପଧା ବିଚାର–** ଅଳଙ୍କାର ବୋଧୋଦୟର ଉତ୍ତର ସୂରୀରୂପେ ବାମଣ୍ଡା ପ୍ରେସରୁ ୧୯୧୩ରେ ଉପଧାବିଚାରର ସୃଷ୍ଟି । ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଉପଧା ମିଳନ ଉପରେ ଗବେଷଣା କରି ପୁସ୍ତକଟି ପ୍ରଣୟନ କରିଛନ୍ତି । ସଚ୍ଚିଦାନନ୍ଦଙ୍କ ଆଗ୍ରହକ୍ରମେ ପୁସ୍ତକଟି ପ୍ରକାଶିତ । ଉପଧା ପ୍ରଣାଳୀ ଜାତୀୟ ସାହିତ୍ୟର ଉପଯୋଗୀ କିନ୍ତୁହେଁ ? ଏପରି ନିୟମରେ ଆବଦ୍ଧ ହେବା କବି ଓ କାବ୍ୟ ପକ୍ଷରେ ଲାଭ ବା କ୍ଷତିକାରକ ଅଟେ ? ଉତ୍କଳର ପ୍ରାଚୀନ କବିମାନେ ବହୁ ଅଳଙ୍କାରାଦି ପ୍ରୟୋଗ କରିବା ସତ୍ତ୍ୱେ ଉପଧା ନିୟମକୁ ପରିତ୍ୟାଗ କରିଥିଲେ କାହିଁକି ? ସମକାଳୀନ ଲେଖକମାନେ ଏହି

ନବ ପ୍ରଚଳିତ ନିୟମ ଅବଲମ୍ବନରେ କ୍ଷତିଗ୍ରସ୍ତ ହୋଇଅଛନ୍ତି କି ନା ? ଏହି ସମସ୍ତ ପ୍ରସଙ୍ଗକୁ ବ୍ରଜବନ୍ଧୁ ଅତି ନିବିଡ଼ ଭାବେ ଆଲୋଚନା କରିଛନ୍ତି । ବାମଣ୍ଡା ଦରବାରରେ ଏହି ପ୍ରସଙ୍ଗରେ ତର୍କ ହୁଏ । ଏହାର ଅମୃତମୟ ଫଳ ଉପଧା ବିଚାର ।

୫ । ଉପଧା ଅନିଷ୍ଟଚିନ୍ତା– ସଚ୍ଚିଦାନନ୍ଦ ଉପଧା ପ୍ରୟୋଗର ପରିପନ୍ଥୀ ଥିଲେ । ଉପଧାବିଚାର ପ୍ରଣୟନ ଦ୍ୱାରା ଉପଧାମିଳନ ଯେ ଜାତୀୟ ସାହିତ୍ୟର କ୍ଷତିକାରକ ଏହା ସିଦ୍ଧ ହୋଇଥିଲା । ସଚ୍ଚିଦାନନ୍ଦ ତେଣୁ ଚାହୁଁଥିଲେ ଉପଧା ସଂପର୍କରେ ଛାତ୍ରମାନେ ଜ୍ଞାନ ଆହରଣ କରନ୍ତୁ । ସଚ୍ଚିଦାନନ୍ଦଙ୍କ ପରାମର୍ଶ କ୍ରମେ ବ୍ରଜବନ୍ଧୁ ଗୁରୁ ଛାତ୍ର ପ୍ରଶ୍ନୋତ୍ତର ଛଳରେ ଉପଧା ଅନିଷ୍ଟଚିନ୍ତା ରଚନା କରନ୍ତି । ଏହା ହିତୈଷିଣୀ ପ୍ରେସ୍‌ରେ (୧୯୧୪) ପ୍ରକାଶିତ ହୁଏ । ଉପଧା ସଂପର୍କରେ ଛାତ୍ରର ପ୍ରତିଟି ପ୍ରଶ୍ନକୁ ଗୁରୁ ଉତ୍ତର ମାଧ୍ୟମରେ ସମାଧାନ କରନ୍ତି ।

ବାସୁଦେବ ଉପଲବ୍ଧି କରିଥିଲେ ବ୍ୟାକରଣଜ୍ଞାନ ବିନା ଶୁଦ୍ଧ ଭାଷା ରଚନା ଅସମ୍ଭବ । ଏହାକୁ ସେ ନିଜର ସନ୍ତାନମାନଙ୍କୁ ଶିକ୍ଷା ଦେଇଥିଲେ । ଏହାରି ଫଳସ୍ୱରୂପ 'ସାହିତ୍ୟ ରତ୍ନାକର' ସୁଢ଼ଳ ପ୍ରେସ୍‌ରେ ୧୯୦୧ରେ ପ୍ରକାଶିତ ହେଲା । ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତିଙ୍କ ନୌକାଟୀକା ସଂଯୁକ୍ତ ହୋଇ ଏହାର ଶୁଦ୍ଧ ସଂସ୍କରଣ କରାଗଲା । ଯେଉଁ ଚନ୍ଦ୍ରାଲୋକଃର ଅଳଙ୍କାର ଅନୁସରଣରେ ବୋଧୋଦୟ ପ୍ରସ୍ତୁତ ହୋଇଥିଲା ସେହି ଚନ୍ଦ୍ରାଲୋକ ମଧ ସଚ୍ଚିଦାନନ୍ଦଙ୍କ ଆନୁକୂଲ୍ୟରେ ହିତୈଷିଣୀ ପ୍ରେସ୍‌ରେ ୧୯୧୨ରେ ପ୍ରକାଶିତ ହେଲା । ଏ ପୁସ୍ତକର ସଂଶୋଧନ ଭାର ପଣ୍ଡିତ ସୁଦର୍ଶନ ମିଶ୍ର ନ୍ୟାୟରତ୍ନ ଗ୍ରହଣ କରିଥିଲେ ।

ଏହି ସମସ୍ତ ପୁସ୍ତକର ଧାରା ବିବରଣୀ ପ୍ରଦାନର ଉଦ୍ଦେଶ୍ୟ ହେଲା ବାମଣ୍ଡାରେ ବାସୁଦେବଙ୍କ ପୃଷ୍ଠପୋଷକତାରେ ଅଳଙ୍କାର ଶାସ୍ତ୍ରର ପ୍ରକାଶନ ଓ ପର୍ଯ୍ୟାଲୋଚନାର ଏକ ପ୍ରଲମ୍ବମାନ ଧାରା ସୃଷ୍ଟି ହୋଇଥିଲା । ଏହାକୁ ତାଙ୍କର ପୁତ୍ର ସଚ୍ଚିଦାନନ୍ଦ ଦେବ ଯତ୍ନର ସହିତ ପରିବର୍ଦ୍ଧିତ ଓ ପରିପୁଷ୍ଟ କରିଥିଲେ ।

ସୁଢ଼ଳଦେବ ଥିଲେ ଜଣେ ଦୂରଦର୍ଶୀ ଯୁଗପୁରୁଷ । ସେ ଜାଣିଥିଲେ ଆଧୁନିକତାର ମହାପ୍ଲାବନକୁ ଆଦରିନେବା ପୂର୍ବରୁ ନିଜସ୍ୱ ସଂସ୍କୃତି ଓ ଐତିହ୍ୟର ସୁବିସ୍ତୀର୍ଣ୍ଣ ବେଳାଭୂମିରୁ ସାରସ୍ୱତ ରତ୍ନସମୂହକୁ ସଂଗ୍ରହ କରିବା ସର୍ବାଦୌ କର୍ତ୍ତବ୍ୟ । ଅତୀତ ପ୍ରତି ଦୃଷ୍ଟିପାତରେ ଭବିଷ୍ୟତର ଯୋଜନା ସୁପରିକଳ୍ପିତ ହୋଇପାରେ । ସୁଢ଼ଳଦେବଙ୍କ ବ୍ୟକ୍ତିସତ୍ତା ଥିଲା ଏହି ଦ୍ୱୈତଧାରାର ଉପାସକ । ଉପରୋକ୍ତ ଦ୍ୱୈତସତ୍ତାର ଅନୁଧ୍ୟାନ ବିନା ସୁଢ଼ଳଦେବ ସୃଷ୍ଟିମାନସକୁ ଅଧ୍ୟୟନ କରିବା ଏକାନ୍ତ ଅସମ୍ଭବ । ଏ ଦ୍ୱୈତଧାରାର ପ୍ରତିଫଳନ ତାଙ୍କର ସୃଷ୍ଟି ସଂପଦରେ ଅତି ବିଚକ୍ଷଣଭାବେ ସୁରକ୍ଷିତ ।

ସୁଢ଼ଳଦେବଙ୍କ ସୃଷ୍ଟି ସ୍ୱଚ୍ଛ । ସେ ଭିତରେ ମଧ ସ୍ରଷ୍ଟାର ଅଭିନବ ସୃଷ୍ଟି ସଂପଦ କଳାତ୍ମକ କାରିଗରୀ ସୁସ୍ପଷ୍ଟ । ପ୍ରାଚୀନରୁ ଆଧୁନିକତାକୁ ପଦଯାତ୍ରା କରିବାର

ସଂଧିକ୍ଷଣରେ ପ୍ରାଚୀନ ସାହିତ୍ୟର ବ୍ୟାକରଣ ସୂତ୍ରଗୁଡ଼ିକ ଆଧୀତ କରିବା ସର୍ବପ୍ରଥମ କର୍ତ୍ତବ୍ୟ । ଏଣୁ ସୁଢ଼ଳଦେବଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ 'ଅଳଙ୍କାର ବୋଧୋଦୟ' ବିଶୁଦ୍ଧ ଭାଷା ଗଠନ ପାଇଁ ଅଭିପ୍ରେତ । ଏହା ପ୍ରଥମ ଆଧୁନିକ ଓଡ଼ିଆ ଅଳଙ୍କାର ଗ୍ରନ୍ଥର ଗୌରବ ବହନ କରେ ।

ସୁଢ଼ଳଦେବ ନିଜସ୍ୱ ତତ୍ତ୍ୱାବଧାନରେ 'ସଟୀକ ଚଣ୍ଡୀ', 'ଗଦାଧର ପଦ୍ଧତି', 'ଦଶକର୍ମ ପଦ୍ଧତି', 'ଜଗନ୍ନାଥ ଅଷ୍ଟକ', 'ସାହିତ୍ୟ ରତ୍ନାକର', 'ତିଥିକୃତ୍ୟ ବ୍ୟବସ୍ଥା' ପ୍ରଭୃତି ପୁସ୍ତକର ଶୁଦ୍ଧ ସଂସ୍କରଣ ପ୍ରକାଶ କରିଥିଲେ ।

## ମୁଦ୍ରାଯନ୍ତ୍ର ପ୍ରତିଷ୍ଠା :

ଉପରୋକ୍ତ ସମସ୍ତ ପ୍ରକାଶନ ସହିତ ନିଜର ମତକୁ ପରିବ୍ୟାପ୍ତ କରିବାପାଇଁ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ବାସୁଦେବଙ୍କ ପାଇଁ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ଫଳରେ ସୁଢ଼ଳଦେବ ୧୮୮୬ ଖ୍ରୀ:ରେ ନିଜ ରାଜଧାନୀ ଦେବଗଡ଼ଠାରେ 'ଜଗନ୍ନାଥବଲ୍ଲଭ ପ୍ରେସ୍' ପ୍ରତିଷ୍ଠା କରିଥିଲେ । ପୂର୍ବରୁ ସେ କଟକଠାରେ ଗୌରୀଶଙ୍କର ରାୟଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ 'ସୁଢ଼ଳ ପ୍ରେସ୍' ସ୍ଥାପନ କରିଥିଲେ । ଏହି ପ୍ରେସ୍‌ରୁ ଚତୁର୍ଭୁଜ ପଟ୍ଟନାୟକଙ୍କ ସଂପାଦନାରେ ସମାଜ ସଂସ୍କାର ଉଦ୍ଦେଶ୍ୟ ନେଇ 'ସଂସ୍କାରକ' ପ୍ରକାଶ ଲଭୁଥିଲା । ଭାବଗ୍ରାହୀ ଦାସଙ୍କ ସଂପାଦନାରେ ପ୍ରକାଶିତ 'ସେବକ' ପତ୍ରିକା ସଂସ୍କାରକ ସହିତ ଯୋଗହେଲା । ଏ ଦୁଇ ପତ୍ରିକା ବାସୁଦେବଙ୍କର ଆର୍ଥିକ ସହାୟତା ଲାଭ କରିଥିଲା । ସଂସ୍କାରକର କିଛି ଆପତ୍ତିଜନକ ଲେଖା ଉପରେ ଓଡ଼ିଶାରେ ବିବଦମାନ ପରିସ୍ଥିତି ସୃଷ୍ଟି ହେଲା । ଫଳରେ ପ୍ରେସ୍‌ର ପରିଚାଳକ ସୀତାନାଥ ରାୟଙ୍କୁ ଏକ ଅଂଶ ପ୍ରଦାନ କରି ଅନ୍ୟ ଅଂଶ ବାସୁଦେବ ୧୮୮୬ରେ ଦେବଗଡ଼କୁ ସ୍ଥାନାନ୍ତରିତ କଲେ । ଏ ପ୍ରେସ୍ ଜଗନ୍ନାଥବଲ୍ଲଭ ପ୍ରେସ୍ ସହ ସଂଯୁକ୍ତ ହେଲା । ପ୍ରେସ୍‌କାର୍ଯ୍ୟର ସୁଚାରୁ ସଂପାଦନାପାଇଁ ୧୮୮୯ରେ କଳିକା ପ୍ରେସ୍ ଏଥିସହିତ ସଂଯୁକ୍ତ ହେଲା । ଜଗନ୍ନାଥବଲ୍ଲଭ ପ୍ରେସ୍‌ରୁ ୧୮୮୯ରେ ଯୁଗାନ୍ତକାରୀ ପତ୍ରିକା 'ସଂବଲପୁର ହିତୈଷିଣୀ' ପ୍ରକାଶ ଲଭିଲା ।

ଅନେକ ଉତ୍ସାହୀ ବ୍ୟକ୍ତି ବିଭିନ୍ନ ସମୟରେ ପ୍ରେସ୍ ସେକ୍ରେଟାରୀ ରୂପେ କାର୍ଯ୍ୟ ସଂପାଦନ କରିଛନ୍ତି । ପ୍ରଥମରୁ ୧୯୦୦ପର୍ଯ୍ୟନ୍ତ ବୃନ୍ଦାବନଚନ୍ଦ୍ର ଦେବ, ୧୯୦୨ ପର୍ଯ୍ୟନ୍ତ ବିଶ୍ୱନାଥ ପାଣିଗ୍ରାହୀ ପରେ ପରେ ରସାନନ୍ଦ ପ୍ରଧାନ, କୁମୁଦବନ୍ଧୁ ସେନ, ନବଘନ ନାୟକ, ଦୀନବନ୍ଧୁ ପ୍ରଧାନ, ଦୀନବନ୍ଧୁ ଗଡ଼ନାୟକ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରମୁଖ ପ୍ରେସ୍ ପରିଚାଳନା କରିଥିଲେ । ସ୍ୱାଧୀନତା ପରେ ପ୍ରେସ୍‌ଟିକୁ ସରକାର ଗ୍ରହଣ କରି ଏ ପର୍ଯ୍ୟନ୍ତ 'ସରକାରୀ ମୁଦ୍ରଣାଳୟ' ରୂପେ ଚଳାଇଆସୁଛନ୍ତି ।

## ପତ୍ରପତ୍ରିକା ପ୍ରକାଶ :

ସମ୍ବାଦପତ୍ର ଆଧୁନିକ ଜୀବନର ସାଂସ୍କୃତିକ ବାର୍ତ୍ତାବହ । ଜାତି, ଧର୍ମ ଓ ଦେଶର ପାର୍ଥକ୍ୟକୁ ଏହା ସଂକୁଚିତ କରି ସଂହତିର ବାର୍ତ୍ତା ପ୍ରଚାର କରେ । ରାଜା ପ୍ରଜାର ଯୋଗାଯୋଗରେ ଏହା ଏକ ଅନନ୍ୟ ମାଧମ । ସ୍ୱଚ୍ଛ ଓ ସମୃଦ୍ଧ ରାଷ୍ଟ୍ର ଗଠନରେ ସମ୍ବାଦପତ୍ର ନିୟାମକ ଭୂମିକା ସଂପାଦନ କରେ ।

ସୁଢ଼ଳଦେବ ଶିକ୍ଷା ଓ ସଭ୍ୟତାର ପ୍ରସାର ପାଇଁ ସମ୍ବାଦପତ୍ର ପ୍ରକାଶ କରିଥିଲେ । ଶାସକୀୟ ବାଣୀକୁ ପ୍ରଜା ନିକଟରେ ପହଞ୍ଚାଇବା, ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ ଓ ଗତିଶୀଳ କରିବା ତଥା ଉତ୍କଳୀୟଙ୍କ ମନରେ ଜାତୀୟତାବୋଧର ଉଦ୍ରେକ କରିବା ହିଁ ଥିଲା ସୁଢ଼ଳଦେବଙ୍କ ପତ୍ରିକା ପ୍ରକାଶର ଆଭିମୁଖ୍ୟ । ବ୍ରିଟିଶ ସରକାରଙ୍କୁ ରାଜ୍ୟର ସମସ୍ୟା ଅବଗତ କରାଇବାପାଇଁ ସେ ପ୍ରଥମେ ଏକ ଇଂରାଜୀ ଓଡ଼ିଆ ଦ୍ୱିଭାଷୀ ପତ୍ରିକା ୧୮୮୭ରେ ପ୍ରକାଶ କରିଥିବା ଅନୁମିତ ହୁଏ । ଏ ପତ୍ରିକାର ଦୁଷ୍ପ୍ରାପ୍ୟତା ସତ୍ତ୍ୱେ 'ଶଂଖ' ଫାଲଗୁନ-୧୯୪୮ ସଂଖ୍ୟାରେ ଶ୍ରୀ–ଦେବଗଡ଼ଙ୍କ ପ୍ରକାଶିତ 'ଭାଷାଧୂଆଁ' ପ୍ରବନ୍ଧର ନିମ୍ନ ତଥ୍ୟକୁ ଏଡ଼ାଇଦିଆଯାଇ ନପାରେ ।

> ସମ୍ବଲପୁର ଓ ଓଡ଼ିଶାର ଉନ୍ନତି ଏବଂ ସଂସ୍କାରକଳ୍ପେ ଗୋଟିଏ ସାପ୍ତାହିକ କାଗଜର ନିତାନ୍ତ ପ୍ରୟୋଜନ ମନେକରି ପ୍ରଥମେ ଗୋଟିଏ ଦ୍ୱିଭାଷୀ ଅର୍ଥାତ୍ ଇଂରେଜୀ ଓ ଓଡ଼ିଆ ପତ୍ରିକା ପ୍ରଚାର କଲେ । ଶ୍ରୀ ଗଣେଶ୍ୱର ପଟ୍ଟନାୟକ ବି.ଏ. ହେଲେ ଇଂରାଜୀ ଅଂଶର ଓ ଶ୍ରୀ ନୀଳମଣି ବିଦ୍ୟାରତ୍ନ ହେଲେ ଓଡ଼ିଆ ଅଂଶର ସମ୍ପାଦକ । ଏହି କାଗଜ ଦୁଇ ଚାରି ସଂଖ୍ୟା ପ୍ରକାଶ ପରେ ଏଥିରେ ମନଃପୂତ ହେଲାନାହିଁ । ତତ୍ପରେ ସଂବଲପୁର ହିତୈଷିଣୀର ଅଭ୍ୟୁଦୟ ।

ଉଲ୍ଲିଖିତ ପତ୍ରିକାର ଦୁଷ୍ପ୍ରାପ୍ୟତା ଯୋଗୁଁ ଏ ସମ୍ପର୍କରେ ଅଧିକ ଆଲୋଚନା ସମ୍ଭବ ନୁହେଁ ।

## ୧ । ସମ୍ବଲପୁର ହିତୈଷିଣୀ :

ସଂବଲପୁର ଗଡଜାତ ସମୂହର ହିତସାଧନ କଳ୍ପେ ସୁଢ଼ଳଦେବ ପତ୍ରିକାର ନାମକରଣ 'ସଂବଲପୁର ହିତୈଷିଣୀ' କରିଥିଲେ । ସଂବଲପୁର ବିଶ୍ଳେଷଣ ଘେନି ପତ୍ରିକାର ଜନ୍ମ ହୋଇଥିଲେ ମଧ ଏହା ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ହିତୈଷାରେ ଉତ୍ସର୍ଗୀକୃତ । ୧୮୮୯ ମେ ୩୦ରେ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦନାରେ ଏ ପତ୍ରିକା ପ୍ରକାଶପାଇଥିଲା । ଏଥିସହିତ ଓଡ଼ିଆ ଭାଷାସାହିତ୍ୟର ନବଜନ୍ମ ହୋଇଥିଲା ।

ହିତୈଷିଣୀ ଥିଲା ନବୀନ ସାହିତ୍ୟିକଙ୍କ ଭୂସ୍ୱର୍ଗ ଓ ପ୍ରବୀଣ ସାହିତ୍ୟିକଙ୍କ ଆକର୍ଷଣଭୂମି । ଏ ପତ୍ରିକା ତିନି ପୀଢ଼ିର ସାହିତ୍ୟିକ ସୃଷ୍ଟି କରିଥିଲା । ୧୮୯୭ରେ

ଉତ୍କଳ ସାହିତ୍ୟ ପତ୍ରିକା ପ୍ରକାଶ ପର୍ଯ୍ୟନ୍ତ ଏହାହିଁ ଥିଲା ଓଡ଼ିଆ ସାହିତ୍ୟିକମାନଙ୍କର ଏକମାତ୍ର ନିୟମିତ ଆଶ୍ରୟସ୍ଥଳ । କ୍ଷଣସ୍ଥାୟୀ ଉତ୍କଳଦର୍ପଣ, ଉତ୍କଳମଧୁପ ଓ ଉତ୍କଳପ୍ରଭା ଓଡ଼ିଆ ସାହିତ୍ୟର ଏକ ରୁଚିପୂର୍ଣ୍ଣ ଧାରା ନିର୍ମାଣରେ ଅସଫଳ ଥିଲେ । ଦୀପିକା, ବାହିକା ସଂବାଦପତ୍ର ଥିବାରୁ ସାହିତ୍ୟ ପ୍ରତି ଥିଲେ ବୀତସ୍ପୃହ । ବିଶେଷ କାରଣବଶତଃ ଏଥିରେ ସାହିତ୍ୟିକ ରଚନା ପ୍ରକାଶ ଲଭୁଥିଲା । କିନ୍ତୁ ହିତୈଷିଣୀ ଆଜୀବନ ନିଜର ଅର୍ଦ୍ଧାଂଶ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଉତ୍ସର୍ଗୀ ଦେଇଥିଲା ।

'ଉତ୍କଳସାହିତ୍ୟ' ପ୍ରକାଶ ପୂର୍ବରୁ ବିଶ୍ୱନାଥ କର, ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀରମୋହନ, ଭୋଳାନାଥ ସାମନ୍ତରାୟ ଓ ଚନ୍ଦ୍ରମୋହନ ମହାରଣା ପ୍ରମୁଖଙ୍କର ଅନେକ ରଚନା ହିତୈଷିଣୀରେ ପ୍ରକାଶ ଲଭିଥିଲା । ଗଙ୍ଗାଧର, ନନ୍ଦକିଶୋର, ଚିନ୍ତାମଣି, ସଚ୍ଚିଦାନନ୍ଦ, ରାମକୃଷ୍ଣ, ଜଳନ୍ଧର ପ୍ରମୁଖଙ୍କୁ ହିତୈଷିଣୀ ସାହିତ୍ୟକ୍ଷେତ୍ରରେ ପ୍ରତିଷ୍ଠା ଆଣିଦେଇଥିଲା । ଆଧୁନିକ-ପ୍ରାଚୀନ ସାହିତ୍ୟ ବିତର୍କର ଅଭିନୟସ୍ଥଳୀ ଥିଲା ହିତୈଷିଣୀ । ଏହାରି ମାଧ୍ୟମରେ ଆଧୁନିକ ସାହିତ୍ୟର ପ୍ରାଣ ପ୍ରତିଷ୍ଠା ହେଲା; ଯା'ର ଅନ୍ତରାଳରେ ସୁଢ଼ଳଦେବଙ୍କ ପ୍ରଚ୍ଛନ୍ନ ପୃଷ୍ଠପୋଷକତା ନିହିତ ଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଦର୍ପଣ, ମଧୁପ, ପ୍ରଦୀପ ଓ ପ୍ରଭା ଦେଇ ସଂଘଟିତ ହୋଇଥିଲେ ମଧ୍ୟ ପ୍ରତିଷ୍ଠା ଲଭିଲା ହିତୈଷିଣୀ ମାଧ୍ୟମରେ ।

୧୮୯୭ ମସିହା ପରେ 'ଉତ୍କଳ ସାହିତ୍ୟ'ରେ କୃତବିଦ୍ୟ ସାରସ୍ୱତ ସାଧକଗଣ ସ୍ଥାନ ପାଉଥିଲେ । ନବୀନ ସାହିତ୍ୟିକମାନଙ୍କୁ ହିତୈଷିଣୀର ଦ୍ୱାରସ୍ଥହେବାକୁ ପଡୁଥିଲା । ସାହିତ୍ୟିକ ଅଭିମତର ସାର୍ବଜନୀନ ପରିପ୍ରଚାର ସହିତ ଆଦର୍ଶ ସମାଜ ଗଠନ ଥିଲା ହିତୈଷିଣୀର ଲକ୍ଷ୍ୟ । ଏ ଲକ୍ଷ୍ୟ ସାଧନପାଇଁ ସମୟେ ସମୟେ ନବୀନ କବି ଲେଖକଙ୍କର ଅପରିଣତ ସୃଷ୍ଟିକୁ ହିତୈଷିଣୀ ଆଗ୍ରହରେ ସ୍ଥାନ ଦେଉଥିଲା । ହିତୈଷିଣୀରେ ବିଶ୍ୱନାଥ କରଙ୍କ କଟକ ନର୍ମାଲ ସ୍କୁଲ, ବାଲ୍ୟଶିକ୍ଷା, ଅନଧିକାର ଚର୍ଚ୍ଚା, ରାକ୍ଷସୀଲୀଳା,ବାଈନାଚ ଓ ଗବର୍ଣ୍ଣମେଣ୍ଟ, ସାହିତ୍ୟ ଓ ସମାଲୋଚନା, ସାହିତ୍ୟଚର୍ଚ୍ଚା, କବି ଉପେନ୍ଦ୍ର ଭଞ୍ଜ, ଗୋଟିଏ ଉତ୍ତର, ଶରୀରଂ ବ୍ରହ୍ମ ମନ୍ଦିର, ବ୍ରାହ୍ମ ଧର୍ମର ଅଭ୍ୟୁତ୍‌ଥାନ ଓ ଦେଶ କାଳ ପାତ୍ର, ଭାଷାର ଅପବ୍ୟବହାର, ଜାତିଭେଦ, ଏକ ପୁରୁଷିଆ କିର୍ତ୍ତୀ, ପୁରାତନ, ଇତିହାସ ପ୍ରଭୃତି ପ୍ରବନ୍ଧ ସହିତ ଏକ ଦୁର୍ଲଭ 'ଭ୍ରମଣ ବୃତ୍ତାନ୍ତ' ପ୍ରକାଶିତ । ଫକୀରମୋହନଙ୍କ ଉତ୍କଳ ଭ୍ରମଣଂ, ରାଧାନାଥଙ୍କ ପାର୍ବତୀ, ଯଯାତିକେଶରୀ ପ୍ରଭୃତି କାବ୍ୟ ହିତୈଷିଣୀରେ ପ୍ରକାଶ ଲଭିଥିଲା । କିନ୍ତୁ ଉତ୍କଳ ସାହିତ୍ୟ ପ୍ରକାଶ ପରେ ଏ ପ୍ରବୀଣ ସାରସ୍ୱତ ସ୍ରଷ୍ଟାଗଣ ହିତୈଷିଣୀରେ ପ୍ରାୟତଃ ଦେଖାଯାନ୍ତି ନାହିଁ । ଅପରପକ୍ଷେ ନନ୍ଦକିଶୋର, ଗଙ୍ଗାଧର, ଚିନ୍ତାମଣି, ଲକ୍ଷ୍ମୀନାରାୟଣଙ୍କ ରଚନା ହିତୈଷିଣୀରେ ଶେଷ ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇଥାଏ ।

ହିତୈଷିଣୀ କେବଳ ଓଡ଼ିଆ ସାହିତ୍ୟକୁ ପ୍ରତିଷ୍ଠା ଆଣିଦେଇଥିଲା ନୁହେଁ ବରଂ ନିମ୍ନ ପ୍ରସଙ୍ଗଗୁଡ଼ିକରେ ସଂଗ୍ରାମୀ ଭୂମିକା ସଂପାଦନ କରିଥିଲା ।

(କ) ଆଧୁନିକ ସାହିତ୍ୟର ପ୍ରସାର ଓ ରାଧାନାଥ ସାହିତ୍ୟର ପ୍ରତିଷ୍ଠା ସହିତ ଶିକ୍ଷାର ପ୍ରସାର ଓ ଶିକ୍ଷାକ୍ଷେତ୍ରରୁ କୁସଂସ୍କାର ଦୂରୀକରଣରେ ସାହାଯ୍ୟ କରିଥିଲା ।

(ଖ) ଓଡ଼ିଶାରେ ରେଳରାସ୍ତା ନିର୍ମାଣରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

(ଗ) ଓଡ଼ିଆ ଭାଷା ଆନ୍ଦୋଳନରେ ନେତୃତ୍ୱ ନେଇ ସଂବଲପୁର ଅଞ୍ଚଳରୁ ଓଡ଼ିଆ ଭାଷା ଉଚ୍ଛେଦ ବିରୁଦ୍ଧରେ ସଂଗ୍ରାମ କରିଥିଲା । ହିତୈଷିଣୀର ନିରବଚ୍ଛିନ୍ନ ଉଦ୍ୟମ ଫଳରେ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ସମ୍ଭବପର ହୋଇଥିଲା ।

(ଘ) ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତଥା ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ଦିଗରେ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲା ।

(ଙ) ଶୁଦ୍ଧ ସମାଜ ଗଠନ ପାଇଁ କୁସଂସ୍କାର ସମୂହର ଉନ୍ମୂଳନ ଓ ନିଶାଦ୍ରବ୍ୟ ବିରୁଦ୍ଧରେ ଜନ ସଚେତନତା ସୃଷ୍ଟିରେ ହିତୈଷିଣୀ ସଫଳ ହୋଇଥିଲା ।

ବିଭିନ୍ନ ବିଷୟର ଆଲୋଚନା ଦ୍ୱାରା ଉତ୍କଳୀୟ ଜନସମାଜର ଜ୍ଞାନବୃଦ୍ଧି ଓ ବୁଦ୍ଧିବୃତ୍ତିର ବିକାଶ ସାଧନ ନିମନ୍ତେ ଏଥିରେ ନାନା ପ୍ରସଙ୍ଗ ଓ ସେଗୁଡ଼ିକର ମୀମାଂସା ପ୍ରକାଶିତ ହେଉଥିଲା । ଉତ୍କଳର ପ୍ରାଚୀନ ଗୌରବ ଗାଥାର ଆଲୋଚନା ଦ୍ୱାରା ଶିକ୍ଷିତ ସମାଜ ମଧ୍ୟରେ ଆତ୍ମମର୍ଯ୍ୟାଦା, ଆତ୍ମଚିନ୍ତା, ଜ୍ଞାନସଂଚାର ସହ ସ୍ୱଦେଶାନୁରାଗ ଓ ସ୍ୱଦେଶ ସେବାର ମାନସିକତା ଜାତ ନିମନ୍ତେ ଏ ପତ୍ରିକା ଉଦ୍‌ବୋଧନ ଦେଉଥିଲା । ହିତୈଷିଣୀ ଥିଲା ସୁଢ଼ଳ ମାନସର ଆଦର୍ଶ ପ୍ରତିଫଳନ । ଉତ୍କଳୀୟ ସଂସ୍କୃତି ସହିତ ଏକାତ୍ମ ହୋଇଥିଲା ଏ ପତ୍ରିକା । ଜନଜୀବନକୁ ନିୟନ୍ତ୍ରିତ କରିଥିଲା ଆଧୁନିକତାର ପରିପ୍ରେକ୍ଷୀରେ । ସର୍ବୋପରି ସୁଢ଼ଳଦେବଙ୍କ ଆଭିମୁଖ୍ୟ ସଫଳ ହୋଇଥିଲା ଏ ପତ୍ରିକା ପ୍ରକାଶନ ସହିତ ।

ତା ୩.୩.୧୯୨୩ରିଖ ସଂଖ୍ୟା ସହିତ ହିତୈଷିଣୀ ପ୍ରକାଶନ ବନ୍ଦ ହୋଇଗଲା । କିନ୍ତୁ ଏ ପର୍ଯ୍ୟନ୍ତ ହିତୈଷିଣୀର ପ୍ରଭାବ ଓଡ଼ିଆ ସାରସ୍ୱତ କ୍ଷେତ୍ରରେ ଅନୁଭୂତ ହୁଏ ।

**୨ । ବିଜୁଳି :**

'ବିଜୁଳି' ପତ୍ରିକା* ଇନ୍ଦ୍ରଧନୁର ମତ ଖଣ୍ଡନ ଓ ଆଧୁନିକ ସାହିତ୍ୟର ଗୌରବ ପ୍ରଖ୍ୟାପନ ପାଇଁ ଅଭିପ୍ରେତ । ବିଜୁଳି ପ୍ରକାଶରେ ଆନନ୍ଦ ପ୍ରକାଶ କରି ''ଇନ୍ଦ୍ରଧନୁ ଓ ବିଜୁଳି'' ଶୀର୍ଷକରେ ସଂବଲପୁର ହିତୈଷିଣୀ ଘୋଷଣା କରେ–

*ଉତ୍କଳ-ଦୀପିକାର ୧୬.୯.୧୮୯୩ ସଂଖ୍ୟାରେ ବିଜୁଳି ପ୍ରଥମସଂଖ୍ୟାର ପ୍ରାପ୍ତି-ସ୍ୱୀକାର କରାଯାଇଛି । ଏହି ତାରିଖକୁ ନଟବର ସାମନ୍ତରାୟ ସମେତ ଅନେକ ସମାଲୋଚକ

ଆଜିକାଲି ଉତ୍କଳରେ 'ଇନ୍ଦ୍ରଧନୁ' ଓ 'ବିଜୁଳି' ନାମକ ଦୁଇଖଣ୍ଡି ଅସାମୟିକ ପତ୍ର ଆଡ଼ମ୍ବରର ସହିତ ପ୍ରକାଶିତ ହେବାକୁ ଆରମ୍ଭ ହୋଇଅଛି । ଏକା ଉପେନ୍ଦ୍ର ଭଞ୍ଜ ବିଷୟ ନେଇ ପତ୍ରିକାଦ୍ୱୟ ପ୍ରକାଶିତ ହେଉଥିଲେ ହେଁ ଉଭୟ ପତ୍ରର ଉଦ୍ଦେଶ୍ୟଗତ ପାର୍ଥକ୍ୟ ରହିଅଛି । ଏକ ପକ୍ଷ ଉପେନ୍ଦ୍ର ଭଞ୍ଜଙ୍କ ଦୋଷଗୁଡ଼ିକ ଦେଖାଇଦେବାକୁ ଉଦୀତ, ଅପରପକ୍ଷ ତାଙ୍କ ଦୋଷକୁ ଗୁଣରୂପେ ବ୍ୟକ୍ତ କରିବାକୁ ବଦ୍ଧପରିକର । (ସ:ହି: ୫/୧୫-୧୩.୯.୧୮୯୩)

ବିଜୁଳି ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ ଦାଶରଥି ରାଉତଙ୍କ ସଂପାଦନାରେ ପ୍ରକାଶ ପାଉଥିଲା । ହିତୈଷିଣୀ ପୃଷ୍ଠାରେ ଆତ୍ମକଥା ଶୀର୍ଷକରେ ଦାଶରଥି ରାଉତ ବର୍ଣ୍ଣନା କରନ୍ତି ।

''ହେ ଗୋଲକଧନ୍ଦେ ! ଯେତେବେଳେ ତୁମ୍ଭେ ସତ୍ୟ ଭଗ୍ନ କରିଅଛ ଆମ୍ଭେ ଜାଣିଲୁଣି ତୁମ୍ଭେ ସାମାନ୍ୟ ପିତୁଳୀ ନୁହଁ । ତୁମ୍ଭେ ଯେପରି ଉନ୍ମତ୍ତ ହୋଇଅଛ ଏବଂ ବର୍ତ୍ତମାନ ଯେପରି ତୁମ୍ଭର ଦଶା ହୋଇଅଛି ସେଥିପ୍ରତି ତୁମ୍ଭଙ୍କୁ ତୀବ୍ରତର ଔଷଧ ପ୍ରୟୋଗ ନ କଲେ ତୁମ୍ଭେ ପ୍ରକୃତିସ୍ଥ ହେବ ନାହିଁ । ତେଣୁ ତୁମ୍ଭର ରୋଗର ଉପଯୁକ୍ତ ବ୍ୟବସ୍ଥା ହେଉଅଛି । ତୁମ୍ଭର ପ୍ରକୃତ ଶତ୍ରୁ ଗୋପରେ ସନ୍ନିଭୂତ ହେଉଅଛି । ତୁମ୍ଭେ ଯେଉଁ ସତ୍ୟ ଭାଙ୍ଗିଅଛ, ସେଥିକି ଆଉ ଆମ୍ଭେ ଏହି ହିତୈଷିଣୀ କ୍ଷେତ୍ରରେ ରହି ତୁମ୍ଭ ସଙ୍ଗରେ ବଚସା କରିବାକୁ ଇଚ୍ଛା କରୁନାହୁଁ । ସ୍ୱର୍ଗରୁ ପୁଷ୍ପକ ବିମାନ ଅଣାଇବାକୁ ପଡ଼ିଲାଣି ।'' (ସମ୍ବଲପୁର ହିତୈଷିଣୀ– ୫/୧୬ ତା.୨୦.୯.୧୮୯୩, ପୃ.୬୨)

ଉତ୍କଳ ପ୍ରଭାରେ ପ୍ରକାଶିତ ଲାଲା ରାମନାରାୟଣଙ୍କ କବି ଉପେନ୍ଦ୍ର ଭଞ୍ଜଙ୍କୁ ନେଇ ଓଡ଼ିଶାରେ ବିତର୍କର ଝଡ଼ ସୃଷ୍ଟି ହୋଇଥିଲା । ଫଳରେ ଦୀପିକା ଅନ୍ତରାଳରେ ପ୍ରାଚୀନପନ୍ଥୀମାନେ ଭଞ୍ଜକାବ୍ୟର ଗୌରବ ଗାନକଲାବେଳେ ହିତୈଷିଣୀ ଅନ୍ତରାଳେ ଆଧୁନିକ ସାରସ୍ୱତ ରଥିଗଣ ଭଞ୍ଜୀୟ ଦୋଷ ଦର୍ଶାଇ ଆଧୁନିକ ସାହିତ୍ୟର ପ୍ରତିଷ୍ଠାପାଇଁ ବଦ୍ଧପରିକର ଥିଲେ ।

---

ବିଜୁଳିର ଜନ୍ମ ତାରିଖ ରୂପେ ଗ୍ରହଣ କରିନେଇଛନ୍ତି । ସମ୍ବଲପୁର ହିତୈଷିଣୀ (୫/୧୫) ତା ୧୩.୯.୧୮୯୩ ସଂଖ୍ୟାରେ ବିଜୁଳିକୁ ସ୍ୱାଗତ କରାଯିବା ପୂର୍ବରୁ ହିତୈଷିଣୀ (୫/୧୪) ତା ୬.୯.୧୮୯୩ ସଂଖ୍ୟାର ବାମଣ୍ଡା ସଂବାଦରେ ଘୋଷଣା କରାଯାଇଛି– ''ବିଜୁଳି ନାମକ ଖଣ୍ଡିଏ ଅସାମୟିକ ପତ୍ରିକା ବାମଣ୍ଡା ପ୍ରେସ୍‌ରେ ପ୍ରଚାରିତ ହେବା ଆରମ୍ଭ ହୋଇଛି ।'' ହିତୈଷିଣୀ ୬.୯.୧୮୯୩ର ଏ ଘୋଷଣାରୁ ସ୍ପଷ୍ଟ ହୁଏ ବିଜୁଳି ସେପ୍ଟେମ୍ବର ୬ ତାରିଖ ଦିନ ବା ତା'ର କିଛିଦିନ ପୂର୍ବରୁ ପ୍ରକାଶିତ । ସେପ୍ଟେମ୍ବର ୧୬କୁ 'ବିଜୁଳି'ର ଜନ୍ମତିଥିରୂପେ ଗ୍ରହଣ କରିବା ସମୀଚୀନ ନୁହେଁ ।

ଅକ୍ଟୋବର ୧୮୯୪ ସୁଦ୍ଧା ବିଜୁଳିର ୧୪ଟି ସଂଖ୍ୟା ପ୍ରକାଶ ପାଇ ବିଜୁଳି ପ୍ରକାଶନ ବନ୍ଦ ହୋଇଥିଲା । ବିଜୁଳି-ଇନ୍ଦ୍ରଧନୁ କଳହ ସହିତ ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତି ସ୍ଥାପିତ ହୋଇଥିଲା । ବିଜୁଳି ପ୍ରଦର୍ଶିତ ଦୋଷସମୂହକୁ ଏକତ୍ରିତ କରି ତଥା ଅନ୍ୟ କିଛି ଦୋଷ ସଂଯୋଗ କରି ଦାମୋଦର ମିଶ୍ର 'ଦୋଷଦର୍ଶନ' (୧୮୯୫) ପୁସ୍ତକ ପ୍ରଣୟନ କରିଥିଲେ । ଏ ପୁସ୍ତକ କେବଳ ଭଞ୍ଜ ଆଲୋଚନା ସମ୍ପର୍କିତ ନୁହେଁ, ଓଡ଼ିଆ ସାହିତ୍ୟର ପ୍ରଥମ ସମୀକ୍ଷାମୂଳକ ପ୍ରକାଶିତ ପୁସ୍ତକ । ଏ ପୁସ୍ତକ ପ୍ରକାଶନ ସହିତ ସୁଢ଼ଳଦେବ ଏକ ଐତିହାସିକ କାର୍ଯ୍ୟ ସଂପାଦନ କରିଥିଲେ ।

## ୩ । ଆଲୋଚନା :

୧୮୯୦ ଖ୍ରୀ:ରେ ବାମଣ୍ଡାରେ ଆଲୋଚନା ସଭା ପ୍ରତିଷ୍ଠା ଲାଭ କରିଥିଲା । ଏ ଅନୁଷ୍ଠାନର ମୁଖପତ୍ର ରୂପେ 'ଆଲୋଚନା' ୧୯୦୦ ଖ୍ରୀ: ମାର୍ଚ୍ଚ ମାସରେ ପ୍ରକାଶ ପାଏ । ରାଜକୁମାର ସ୍କୁଲର ପ୍ରଧାନ ଶିକ୍ଷକ ଏହାକୁ ପୂର୍ଣ୍ଣ ଆର୍ଥିକ ସାହାଯ୍ୟ ଯୋଗାନ୍ତି । ଚବିଶ ପୃଷ୍ଠାର ଏ ପତ୍ରିକାର ଡାକ ମାସୁଲ ସମେତ ବାର୍ଷିକ ମୂଲ୍ୟ ସର୍ବସାଧାରଣଙ୍କ ପାଇଁ ଏକ ଟଙ୍କା ମାତ୍ର ରଖାଯାଇଥିଲା । ଏ ପତ୍ରିକାର ସଂପାଦକ ଥିଲେ ଜଳନ୍ଧର ଦେବ ।

ଏ ପତ୍ରିକାର ଆଭିମୁଖ୍ୟ ଥିଲା ପ୍ରବନ୍ଧ ସାହିତ୍ୟର ଉନ୍ନତି ଏବଂ ଉତ୍କଳ ଶିକ୍ଷିତ ଲୋକମାନଙ୍କୁ ରଚନା ଶିକ୍ଷାରେ ସହାୟତା କରିବା । ପତ୍ରିକାଟି ସମାଜନୀତି, ବିଜ୍ଞାନ, ସାହିତ୍ୟ, ଚିକିତ୍ସା ପ୍ରଭୃତି ହିତକର ବିଷୟରେ ଆଲୋଚନାକୁ ଅଗ୍ରାଧିକାର ଦେଇଥିଲା ।

## ୪ । ଉତ୍କଳ ମଧୁପ :

ଆଲୋଚନା ପ୍ରକାଶର ତିନି ମାସ ପରେ ୧୯୦୦ ଖ୍ରୀ: ଜୁନ୍ ମାସରେ 'ଉତ୍କଳ ମଧୁପ' ବାମଣ୍ଡା ସୁଢ଼ଳ ପ୍ରେସ୍‌ରୁ ପ୍ରକାଶ ଲଭେ । ଏହାର ସଂପାଦନା କରୁଥିଲେ ନୀଳମଣି ବିଦ୍ୟାରତ୍ନ ।

ମଧୁପ ବିବିଧ ବିଷୟକ ପତ୍ରିକା । ଏଥିରେ ବିଭିନ୍ନ ଜ୍ଞାତବ୍ୟ ତଥ୍ୟ ମୁଦ୍ରିତ ହେଉଥିଲା । ଏହା ଥିଲା ଏକ ବିଶ୍ୱକୋଷ ଓ ବିବିଧ ଜ୍ଞାନର ଭଣ୍ଡାର । ଜ୍ଞାନ ବ୍ୟତୀତ ଏଥିରେ ଥିଲା ବିଭିନ୍ନ ସମସ୍ୟାର ସମାଧାନ, ବିଭିନ୍ନ ରୋଗର ନିଦାନ । ସବୁ ଶ୍ରେଣୀର ପାଠକଙ୍କ ପାଇଁ ଏହା ଉଦ୍ଦିଷ୍ଟ ଥିଲା ।

ବିଦ୍ୟାରତ୍ନଙ୍କ ବାମଣ୍ଡା ପରିତ୍ୟାଗ ସହିତ ଏ ପତ୍ରିକା ମଧ୍ୟ ଖଲ୍ଲିକୋଟ, ବଡ଼ଖେମୁଣ୍ଡି ଦେଇ ଶେଷରେ କଟକରୁ ପ୍ରକାଶ ଲଭିଥିଲା । ଏପରିକି ବିଦ୍ୟାରତ୍ନଙ୍କ ତିରୋଧାନ ପରେ ମଧ୍ୟ ଉତ୍କଳ ସାହିତ୍ୟ ପ୍ରେସ୍‌ରୁ ଏହା ପ୍ରକାଶ ପାଇଛି ।

ସୁଢ଼ଳଦେବଙ୍କ ଜୀବିତାବସ୍ଥାରେ ଉପରୋକ୍ତ ଚାରୋଟି ପତ୍ରିକା ପ୍ରକାଶ ଲଭି ବାମଣ୍ଡାକୁ ବୁଧ-ହଂସ-କେଳି-ସରର ମର୍ଯ୍ୟାଦା ଆଣିଦେଇଥିଲା । ୧୯୦୩ରେ

ସୁଢ଼ଳଦେବଙ୍କ ଦେହାନ୍ତ ହୋଇଥିଲେ ମଧ୍ୟ ତାଙ୍କର କଳାତ୍ମକ ପ୍ରଭାବ ସ୍ୱାଧୀନତା ପର୍ଯ୍ୟନ୍ତ ଅନୁଭୂତ ହୁଏ । ପରବର୍ତ୍ତୀ ପର୍ଯ୍ୟାୟରେ ସୁଢ଼ଳଦେବ ପ୍ରତିଷ୍ଠିତ ଧାରାକୁ ଉଜ୍ଜୀବିତ ରଖିବାପାଇଁ ବାମଣ୍ଡାରୁ 'ଉପହାର' (୧୯୩୫-୧୯୪୫) ଓ 'ଶଂଖ' (୧୯୪୫-୧୯୪୮) ପ୍ରକାଶ ଲଭେ ।

## ଆଲୋଚନା ସଭା ଓ ଉପାଧି ପ୍ରଦାନ :

ବାମଣ୍ଡା ଦରବାରର ସାରସ୍ୱତ ଆଲୋଚନାକୁ ଉଚିତ ଦିଗ୍‌ଦର୍ଶନ ଦେବାପାଇଁ ସଚ୍ଚିଦାନନ୍ଦଙ୍କ ସଭାପତିତ୍ୱରେ ଆଲୋଚନା ସଭା ଗଠିତ ହୁଏ । ଦରବାର ସଭା ଓ ଆଲୋଚନା ସଭା ଭିତରେ ପାର୍ଥକ୍ୟ ବିଶେଷ ନଥିଲା । ଦରବାର ପଣ୍ଡିତମାନଙ୍କ ଶାସ୍ତ୍ରାଲୋଚନା, ସମସ୍ୟାପୂରଣରେ ମସ୍‌ଗୁଲ ଥିଲାବେଳେ ଆଲୋଚନା ସଭାରେ ବାହ୍ୟ ଆଗତ ବୁଦ୍ଧିଜୀବୀ ଓ ସାହିତ୍ୟିକମାନଙ୍କୁ ସ୍ୱାଗତ କରାଯାଉଥିଲା ଏବଂ ବିଭିନ୍ନ ବିଷୟରେ ଆଲୋଚନା ହେଉଥିଲା । ବାମଣ୍ଡା ସାହିତ୍ୟସମାଜ ସହିତ ବିଦେଶାଗତ ସାହିତ୍ୟିକଙ୍କ ଭାବସମନ୍ୱୟରେ ସାହିତ୍ୟ ଆଲୋଚନା ସରଗରମ ହୋଇ ଉଠୁଥିଲା ।

ଆଲୋଚନା ସଭାକୁ ବିଭିନ୍ନ ସମୟରେ ରାଧାନାଥ, ଫକୀରମୋହନ, ମଧୁସୂଦନ ରାଓ, ବିଶ୍ୱନାଥ କର, ବାରିଷ୍ଟର ବିଶ୍ୱନାଥ ମିଶ୍ର, ମଧୁବାବୁ, ଗୌରୀଶଙ୍କର, ଭୋଳାନାଥ ସାମନ୍ତରାୟ, P.E. Heberlet, ମାର୍କଣ୍ଡେୟ ତର୍କପଞ୍ଚାନନ, ଶଶିଭୂଷଣ ରାୟ, କୃପାସିନ୍ଧୁ ମିଶ୍ର, ବିଜୟଚନ୍ଦ୍ର ମଜୁମଦାର, ଯୋଗେଶଚନ୍ଦ୍ର ରାୟ, ଗଙ୍ଗାଧର ମେହେର, ବିପିନବିହାରୀ ରାୟ, ବଲାଇ ବାନାର୍ଜୀ ପ୍ରମୁଖ ଅଳଙ୍କୃତ କରିଥିବାର ଜଣାପଡ଼େ । ଦରବାରରେ ଗଢ଼ି ଉଠିଥିବା ସାରସ୍ୱତ ଆସର ହିଁ ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚନା ସଭାର ରୂପ ନେଇ ସାହିତ୍ୟାଲୋଚନାକୁ ଗତିଶୀଳ କରିଥିଲା ।

ଆଲୋଚନା ସଭାରେ ମୂର୍ତ୍ତିପୂଜା, ବାଲ୍ୟବିବାହ, ଜାତିଭେଦ, ନାରୀଶିକ୍ଷା, ପୁରାଣାଦି ପ୍ରଣେତା ବ୍ୟାସ ଜଣେ ନା ଏକାଧିକ ବ୍ୟକ୍ତି, ଅଭିବ୍ୟକ୍ତିବାଦ, ସ୍ୱର୍ଗ ଓ ନରକ, ବିବିଧ ସଂପ୍ରଦାୟର ଧର୍ମଶାସ୍ତ୍ର, ବ୍ରାହ୍ମଧର୍ମ ପ୍ରଭୃତି ସଂବେଦନଶୀଳ ବିଷୟ ଉପରେ ପୁଂଖାନୁପୁଙ୍ଖ ଆଲୋଚନା ହୋଇଥିଲା । ଏଥିସହିତ ବିଜୟଚନ୍ଦ୍ର ମଜୁମଦାରଙ୍କ ରହଣୀ ଓ ଶିକ୍ଷାଦାନ ଏବଂ ବିଜ୍ଞାନ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ବାରମ୍ବାର ଆଗମନ ଯୁକ୍ତିମୂଳକ ସିଦ୍ଧାନ୍ତ ଉପରେ ବିଶ୍ୱାସ କରିବାକୁ ବାଧ କରିଥିଲା । ଅଯଥା କଳ୍ପନା ବିଳାସରେ ନ ଭାସି ଏକ ହେତୁବାଦୀ ଦୃଷ୍ଟିଭଙ୍ଗୀ ବାମଣ୍ଡାରେ ସୃଷ୍ଟି ହୋଇଥିଲା । ଏ ଦୃଷ୍ଟିଭଙ୍ଗୀକୁ ଲାଳିତ, ପାଳିତ ଓ ପ୍ରସାରିତ କରିଥିଲେ ସୁଢ଼ଳଦେବ । ତେଣୁ ତାଙ୍କର ବୈଦିକ ପ୍ରସ୍ତାବ ବା ବ୍ରାହ୍ମଧର୍ମର କୁଟୀଳାର୍ଥ ପ୍ରଦର୍ଶନ ସମୟେ ଏହି ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।

ନାରୀଜାତିର ନିର୍ଯ୍ୟାତନା, ଭାରତୀୟଙ୍କ ଦୁର୍ଗତି ଉପରେ ଆଲୋଚନା ସମାଜର ବାସ୍ତବ ଚିତ୍ରକୁ ଧରି ତୋଳେ । ସାହିତ୍ୟିକଗଣ କେବଳ କଳ୍ପନା ଚକ୍ଷୁ ନୁହେଁ ବାସ୍ତବ ଅନୁଭୂତି ଉପରେ ସାହିତ୍ୟ ସୃଷ୍ଟି ପାଇଁ ଆଗଭର ହୁଅନ୍ତି । ଏହାରି ଫଳରେ ସୃଷ୍ଟି ହୁଅନ୍ତି ଜଳନ୍ଧର ଦେବ, ସଚ୍ଚିଦାନନ୍ଦ ଦେବ, ବଳଭଦ୍ରଦେବ, ଲିଙ୍ଗରାଜ ପାଣିଗ୍ରାହୀ, ହରିହର ମହାପାତ୍ର, ବୃନ୍ଦାବନ ନାଥଶର୍ମାଙ୍କ ପରି ସାହିତ୍ୟିକଗଣ ।

ଆଲୋଚନାସଭା ସହିତ ସମାନ୍ତରାଳ ଭାବରେ ଛାତ୍ରସମିତି (୧୮୯୨) ଛାତ୍ରବନ୍ଧୁ ସମିତି (୧୯୦୩), କର୍ତ୍ତବ୍ୟବୋଧିନୀ ନାମରେ ତିନୋଟି ଛାତ୍ରମାନଙ୍କର ଅନୁଷ୍ଠାନ ଗଢ଼ି ଉଠିଥିଲା । ଏ ଅନୁଷ୍ଠାନଗୁଡ଼ିକ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ସାହିତ୍ୟସ୍ପୃହା ଜାଗ୍ରତରେ ସଫଳ ହୋଇଥିଲା ।

ସୁଢ଼ଳଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବାମଣ୍ଡାର ସାହିତ୍ୟ ଚର୍ଚ୍ଚା ପରିବ୍ୟାପ୍ତ ହୋଇ ଓଡ଼ିଶା ତଥା ଓଡ଼ିଶା ବାହାରର ସାହିତ୍ୟିକମାନଙ୍କୁ ଆକୃଷ୍ଟ କରିଥିଲା । ବାମଣ୍ଡାର ସାରସ୍ୱତ ପରଂପରାକୁ ଦିଗନ୍ତପ୍ରସାରୀ କରିବା ପାଇଁ ସୁଢ଼ଳଦେବ ରାଧାନାଥଙ୍କୁ ନିମନ୍ତ୍ରଣ କରିଥିଲେ । ୧୮୮୬ରେ ରାଧାନାଥ ଦଶ ଦିନ ଛୁଟି ଗ୍ରହଣ କରି ବାମଣ୍ଡା ଆଗମନ କରିଥିଲେ । ରାଧାନାଥଙ୍କୁ ବାମଣ୍ଡା ରାଜ୍ୟରେ ଏଗାରଥର ତୋପ ଧ୍ୱନି ସହିତ ମହାସମାରୋହରେ ସ୍ୱାଗତ କରାଯାଇଥିଲା । ଦରବାରରେ ଏକ ବିରାଟ ସାରସ୍ୱତ ସଭାରେ ସଂସ୍କୃତ ପଣ୍ଡିତ ବଡ଼ପଣ୍ଡାଙ୍କ ସଭାପତିତ୍ୱରେ ରାଧାନାଥଙ୍କୁ 'କବିବର' ଉପାଧି ପ୍ରଦାନ କରାଯାଇଥିଲା । ରାଧାନାଥଙ୍କ ରହଣିକୁ ସାରସ୍ୱତ ମହୋତ୍ସବ ଭାବେ ବାମଣ୍ଡା ପାଳନ କରିଥିଲା । ସଭାରେ ରାଧାନାଥ ତୋଷାମଦ ଉପରେ ପାଞ୍ଚ ପଦର କବିତା ଆବୃତ୍ତି କରିଥିଲେ । ଏ କବିତା ଯଦିଓ ଉଚ୍ଚାଙ୍ଗ କଳାତ୍ମକ ସ୍ୱାକ୍ଷର ବହନ କରେନା ତଥାପି ରାଧାନାଥଙ୍କ ସାମଗ୍ରିକ କବିକୃତିକୁ ଉପଲକ୍ଷ୍ୟ କରି 'କବିବର' ଉପାଧି ପ୍ରଦତ୍ତ ହୋଇଥିଲା । ତୋଷାମଦକୁ ଇଙ୍ଗିତ କରି ରାଧାନାଥ ଯେଉଁ କବିତା ପଢ଼ିଥିଲେ ପରବର୍ତ୍ତୀ ପର୍ଯ୍ୟାୟରେ ବାମଣ୍ଡା ଦରବାରର ସ୍ୱଚ୍ଛତା ତାଙ୍କୁ ଲଜ୍ଜିତ କରିଥିଲା, ଯାହାକି ତାଙ୍କର ପରବର୍ତ୍ତୀ କୃତିରେ ସହଜଲଭ୍ୟ । ରାଧାନାଥ ସପ୍ତାହବ୍ୟାପୀ ବାମଣ୍ଡାରେ ଅବସ୍ଥାନ କରି ବିଭିନ୍ନ ଆଲୋଚନା ସଭାରେ ଅଂଶଗ୍ରହଣ କରିଥିଲେ । ଅନେକବାର ବାମଣ୍ଡା ଆଗମନ ତାଙ୍କ ସାରସ୍ୱତ ଜୀବନକୁ ଋଦ୍ଧିମନ୍ତ କରିଥିଲା ।

୧୮୯୭ରେ ରାଧାନାଥ ବ୍ରିଟିଶ ସରକାରଙ୍କଠାରୁ 'ରାୟ ବାହାଦୂର' ଉପାଧି ପାଆନ୍ତି । ଏଥିରେ ଉଲ୍ଲସିତ ବାମଣ୍ଡା ସାରସ୍ୱତ ସମାଜ ୧୬.୬.୧୮୯୭ରେ ଏକ ସଂବର୍ଦ୍ଧନାସଭା ସଚ୍ଚିଦାନନ୍ଦଙ୍କ ସଭାପତିତ୍ୱରେ କରନ୍ତି । ଅସୁସ୍ଥତା ଯୋଗୁଁ ସୁଢ଼ଳଦେବ ଅନୁପସ୍ଥିତ ଥିଲେ ମଧ୍ୟ ତାଙ୍କରି ନିର୍ଦ୍ଦେଶକ୍ରମେ ସଂବର୍ଦ୍ଧନାସଭା ଅନୁଷ୍ଠିତ ହୁଏ । ଏଥିରେ ଜଳନ୍ଧର, ବିଦ୍ୟାରତ୍ନ, ଜଗଦାନନ୍ଦ ଦାସ, କାଳୀଚରଣ ଦ୍ୱିବେଦୀ, ମଧୁସୂଦନ ମିଶ୍ର,

ବଳଭଦ୍ର ଦେବ ପ୍ରମୁଖ ରାଧାନାଥଙ୍କ ସାମଗ୍ରିକ କୃତିତ୍ୱର ଆଲୋଚନା କରନ୍ତି । ଏ ସଂବର୍ଦ୍ଧନାସଭାର ସମ୍ପୂର୍ଣ୍ଣ ବିବରଣୀ ରାଧାନାଥଙ୍କ ପାଖକୁ ପ୍ରେରଣ କରାଯାଏ । ଉତ୍ତରରେ ରାଧାନାଥ ଲେଖନ୍ତି ''ରାଜଦତ୍ତ ଉପାଧି ପରି ଏହି ସମ୍ମାନ ମଧ୍ୟ ମୋହର ଆଶାତୀତ ଓ କଳ୍ପନାତୀତ ଅଟେ ।'' ସୁଡ଼ଳଦେବ ତଥା ବାମଣ୍ଡାର ପୃଷ୍ଠପୋଷକତାକୁ ମହନୀୟଭାବେ ରାଧାନାଥ ଏ ପତ୍ରରେ ସ୍ୱୀକାର କରନ୍ତି–

> ମାତ୍ର ମୋହଦ୍ୱାରା ଯେବେ ଉତ୍କଳ ସାହିତ୍ୟର କଣାମାତ୍ର ଉନ୍ନତି ସାଧିତ ହୋଇଥାଏ, ସେଥିରେ ମୂଳୀଭୂତ କାରଣ ବାମଣ୍ଡା, ଅଥବା ବାମଣ୍ଡାର ପରମ ମାନନୀୟ ଅଧୀଶ୍ୱର ମହାରାଜ ସୁଡ଼ଳଦେବ ଅଟନ୍ତି । ଓଡ଼ିଆ ସାହିତ୍ୟ ପ୍ରତି ଆବାଲ୍ୟ ମୋହର ପ୍ରଗାଢ଼ ଅନୁରାଗ ଥିଲା । ଅତି ଅଳ୍ପ ବୟସରୁ ମୁଁ ସେହି ସାହିତ୍ୟର ଅନୁଶୀଳନରେ ବ୍ରତୀ ହୋଇଥିଲି । ୨/୩ ବର୍ଷ ପରେ ନାନା କାରଣରୁ ବିଶେଷତଃ ସାହିତ୍ୟିକ ସହାନୁଭୂତିର ଅଭାବ ହେତୁରୁ ଉତ୍କଳ ସାହିତ୍ୟର ଚର୍ଚ୍ଚା ମୁଁ ପ୍ରାୟ ପରିତ୍ୟାଗ କରିଥିଲି ଏବଂ ପ୍ରାୟ ୮/୧୦ ବର୍ଷ କାଳ ସେ ବିଷୟରେ ସଂପୂର୍ଣ୍ଣ ଉଦାସୀନ ଥିଲି । ବିଦ୍ୟୋତ୍ସାହିପ୍ରବର ଶ୍ରୀଯୁକ୍ତ ସୁଡ଼ଳଦେବଙ୍କ ସହିତ ମୋର ପୂର୍ବରୁ ପରିଚୟ ହୋଇଥିଲେ ମୋହର ଜୀବନର ଉତ୍କୃଷ୍ଟତମ ଅଂଶ ଏପରି ବନ୍ଧ୍ୟ ହୋଇନଥାନ୍ତା । ['ସମ୍ବଲପୁର ହିତୈଷଣୀ' - (୯/୮) ୨୧.୭.୧୮୯୭)]

ରାଧାନାଥଙ୍କ ବାମଣ୍ଡା ପ୍ରେମର ଅପରୂପ ନିର୍ଯ୍ୟାସ ତାଙ୍କର ପ୍ରତିଟି କାବ୍ୟରେ ପ୍ରତିଫଳିତ । ଏପରିକି 'ଭ୍ରମଣକାରୀର ପତ୍ର' ଓ 'ସାର୍ ବାସୁଦେବ ସୁଡ଼ଳଦେବ K.C.I.E, ପ୍ରବନ୍ଧରେ ସୁଡ଼ଳଦେବଙ୍କୁ ସେ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି ।

ରାଧାନାଥଙ୍କ ସହିତ ସୁଡ଼ଳଦେବଙ୍କର ବ୍ୟକ୍ତିଗତ ସଂପର୍କ ଅତି ନିବିଡ଼ଥିଲା । ଉଭୟଙ୍କ ମଧ୍ୟରେ ଉଚ୍ଚକୋଟୀର ପତ୍ର ସଂପର୍କ ଥିଲା । ସୁଡ଼ଳଦେବ ନିଜର ସମସ୍ତ ମାଙ୍ଗଳିକ କାର୍ଯ୍ୟରେ ରାଧାନାଥଙ୍କୁ ନିମନ୍ତ୍ରଣ କରୁଥିଲେ । ସାରସ୍ୱତ ସଂପର୍କର ଉର୍ଦ୍ଧ୍ୱରେ ଏକ ନିବିଡ଼ ବଂଧୁତ୍ୱ ଗଢ଼ିଉଠିଥିଲା । ତାଙ୍କର ବଂଧୁତ୍ୱର ନିବିଡତାକୁ ପ୍ରମାଣିତ କରିବାକୁ ରାଧାନାଥ ଜୀବନୀରେ ପତ୍ରସ୍ଥ ସୁଡ଼ଳଦେବଙ୍କ ଏକ ପତ୍ର ସହିତ ରାଧାନାଥଙ୍କ ଏକ ଅପ୍ରକାଶିତ ପତ୍ରକୁ ପାଠକଙ୍କ ଅବଗତି ନିମନ୍ତେ ଏଠାରେ ଉଦ୍ଧୃତ କରାଗଲା । ରାଧାନାଥଙ୍କ ପତ୍ରରୁ ଅସୁବିଧା ସମୟରେ ସେ କିପରି ସୁଡ଼ଳଦେବଙ୍କୁ ଆର୍ଥିକ ସାହାଯ୍ୟ ଯାଚଞ୍ଚା କରୁଥିଲେ ସ୍ପଷ୍ଟ ହୁଏ । ସୁଡ଼ଳଦେବଙ୍କୁ ଏକମାତ୍ର ଭରସାକରି ଆର୍ଥିକ ସାହାଯ୍ୟ ମାଗିବାକୁ ରାଧାନାଥ ପଶ୍ଚାତ୍‌ପଦ ହୋଇନାହାଁନ୍ତି । ପତ୍ର ଦୁଇଟିର ଐତିହାସିକ ଆବଶ୍ୟକତା ଉପଲବ୍ଧି କରି ଏଠାରେ ଉଦ୍ଧୃତ କରାଗଲା ।

## ସୁଢ଼ଳଦେବଙ୍କ ପତ୍ର

ଦେବଗଡ଼
୧୬-୧୧-୯୫

ଶ୍ରୀଯୁକ୍ତ ବାବୁ ରାଧାନାଥ ରାୟ ମହାଶୟ ସମୀପେଷୁ
ମହାଶୟ,

ଆମ୍ଭେ କୁଶଳରେ ହରିହରଛତ୍ରରୁ ଫେରି ଆସିଅଛୁଁ । ଅତ୍ରତ୍ୟ ସର୍ବବିଧ ସମାଚାର ହିତୈଷଣୀରୁ ଅବଗତ ହୋଇଥିବେ । ଆପଣଙ୍କର କୁଶଳ ସମାଚାର ଲେଖିବା ହେବେ । ଆଗାମୀ ଡ଼ିସେମ୍ବର ମାସ ୧୦ ତାରିଖ ଦିନ ଆମ୍ଭର ଏକ କନ୍ୟାଙ୍କର ଶୁଭବିବାହ ସମ୍ପନ୍ନ ହେବ । ଆପଣଙ୍କୁ ଅନୁରୋଧ କରୁଅଛୁଁ ଯେ, ଆପଣ ଅନୁଗ୍ରହ ପୂର୍ବକ ଉପରୋକ୍ତ ବିବାହୋ-ତ୍ସବ ଉପଲକ୍ଷରେ ଏଠାରେ ଉପସ୍ଥିତ ହୋଇ ଆମ୍ଭର ଆନନ୍ଦବର୍ଦ୍ଧନ କରାଇବା ହେବେ ।

ଯଦ୍ୟପି ରାଜକାର୍ଯ୍ୟ ପ୍ରତିବନ୍ଧକକୁ ଠିକ୍ ଉକ୍ତ ସମୟରେ ଉପସ୍ଥିତ ହୋଇ ନ ପାରନ୍ତି, ତେବେ ବିବାହୋତ୍ସବ ପରେ ଆଗମନ କରିବା ପ୍ରତି ଚେଷ୍ଟା କରିବା ହେବେ । ଦୁଇବର୍ଷ ହେଲା ସାକ୍ଷାତ ହୋଇନାହିଁ । ଅନ୍ତତଃ ୨/୧ ବର୍ଷରେ ଥରେ ଲେଖାଁଏ ସାକ୍ଷାତ ହେବାର ବାଞ୍ଛନୀୟ ।

ଆପଣଙ୍କ ଲିଖିତ ''କନ୍ନାନ୍ତ' ସମ୍ବନ୍ଧୀୟ ଶେଷପତ୍ର ପାଇଥିଲୁ, କିନ୍ତୁ ମୋଫସଲରେ ବିବିଧ କାର୍ଯ୍ୟରେ ବ୍ୟାପୃତଥିବା ଏବଂ ହରିହରଛତ୍ର ଯାଇଥିବା ହେତୁ ଉତ୍ତର ଦେଇପାରି ନ ଥିଲୁଁ । ଯାହାହେଉ, ଆପଣ ଏଠାକୁ ଆଗମନ କରିବାର ପୂର୍ଣ୍ଣ ବିଶ୍ୱାସ ରଖିଥିବାରୁ ବର୍ତ୍ତମାନ ସେ ସମ୍ବନ୍ଧରେ କିଛି ଲେଖିବା ନିଷ୍ପ୍ରୟୋଜନ । ସାକ୍ଷାତରେ ସକଳ କଥା ହେବା ।

ଶ୍ରୀ ବାସୁଦେବ ସୁଢ଼ଳଦେବ
ରାଜା । କି । ବାମଣ୍ଡା

(ରାଧାନାଥ ଜୀବନୀରୁ ଗୃହୀତ)

## ରାଧାନାଥଙ୍କ ଏକ ଅପ୍ରକାଶିତ ପତ୍ର

କଟକ
୨୦-୮-୯୯

ଶ୍ରୀହରି ଶରଣମ୍
ସବିନୟ ନିବେଦନ ମିଦଂ —
ଶ୍ରୀ ମହାରାଜ,

ଶ୍ରୀ ଛାମୁଙ୍କ ଅନୁଗ୍ରହ ପ୍ରେରିତ ପତ୍ରର ପ୍ରାପ୍ତି ସ୍ୱୀକାର କି ଭାବରେ କରିବି, ମୋହର ଭାଷାରେ ତାହା ନାହିଁ । ଚିନ୍ତା ଜର୍ଜରିତ ହୋଇ ଜୀବନ୍ମୃତ ପ୍ରାୟ ହୋଇଅଛି । ଏ ଅବସ୍ଥାରେ ଉକ୍ତ ପତ୍ରର କୃପାକଟାକ୍ଷ ମାତ୍ର ମୋହ ପକ୍ଷରେ ଅମୃତମୟ ହେଲା ।

ମୋତେ ନିତାନ୍ତ ସ୍ୱାର୍ଥପର ବୋଲି ଭାବିବେ ନାହିଁ । ଶ୍ରୀଛାମୁ ମୋହର ବିପଦରେ ପ୍ରକୃତ ସହାୟ ସ୍ଥଳେ ମୁଁ ଏଭଳି ଅନୁରୋଧରେ ସାହସୀ ହୋଇଅଛି ନତୁବା ଏପରି ଅନୁରୋଧ କରିବାର ଲୋକ ମୁଁ ନୁହେଁ । ମୋହର ମନୁଷ୍ୟ ଦୁଇ ସହସ୍ର ଟଙ୍କା ନେଇ କଲିକତା ଯାତ୍ରା କରିଅଛନ୍ତି; ବାକୀ ୩୦୦୦ ଟଙ୍କାର ଏକାନ୍ତ ଆବଶ୍ୟକ । ଶ୍ରୀଛାମୁ ଦୁଇ ସହସ୍ର ଦେଲେ ବାକୀ ଏକ ସହସ୍ର ଋଣ କରିବାକୁ ହେବ । ଋଣକୁ ମୁଁ ଚିରକାଳ ଭୟ କରିଥାଏ, ଏବଂ ମୋହର ପାରିବାରିକ ବ୍ୟୟ ଅନେକ ବୋଲି ବାସ୍ତବିକ ମୁଁ ସମ୍ବଳହୀନ । ଶ୍ରୀଛାମୁଙ୍କ ଦୁଇ ସହସ୍ର ଟଙ୍କା ମୋହର ବାମଣ୍ଡାଗମନର ମଜୁରି ଦିଆଯିବ । ବାକୀ ଏକ ସହସ୍ର ଟଙ୍କା ଶ୍ରୀଛାମୁ ମୋତେ କେବଳ ପୁରସ୍କାର ସ୍ୱରୂପ ପ୍ରଦାନ କରି ପାରନ୍ତି ନାହିଁକି ? ଦେଶର କବିତ୍ୱ ସେବା ଦ୍ୱାରା ମୋହର ଆଜି ଏପରି ଦଶା । ବୋମ୍ବାଇ... ମୋକଦ୍ଦମାରେ ଏକ ମାସ ମଧ୍ୟରେ ୬୦ ସହସ୍ର ଚାନ୍ଦା ଉଠିଥିଲା । ଉତ୍କଳରେ ୬୦ ପଇସା ସୁଦ୍ଧା ମିଳିବା କଷ୍ଟ । ଏପରି ସ୍ଥଳରେ ଶ୍ରୀଛାମୁ ହିଁ ଏକମାତ୍ର ଭରସା । ଏ କଥା ମୁଁ ନିତାନ୍ତ ସ୍ତାବକତା ପ୍ରଣୋଦିତ ହୋଇ କହୁନାହିଁ, ହୃଦୟ କନ୍ଦରରୁ ଏ କଥାଟି ସ୍ୱତଃ ନିଃସୃତ ହେଉଅଛି । ସେହି ସକାଶେ କେବଳ ପୁରସ୍କାରର କଥା ଉତ୍ଥାପନ କଲି । ଶ୍ରୀଛାମୁ ନଦେଲେ ମୋତେ ଅଗତ୍ୟା କର୍ଜ କରିବାକୁ ହେବ । କିନ୍ତୁ ତଥାପି ଶ୍ରୀଛାମୁଙ୍କୁ ଭରସା କରିଅଛି । ମହାବିପଦଗ୍ରସ୍ତ ହୋଇ ଶ୍ରୀଛାମୁଙ୍କୁ ସ୍ମରଣ କରୁଅଛି, ଏବଂ ଶ୍ରୀଛାମୁ ମୋତେ ଏହି ମହାସଙ୍କଟରୁ ଉଦ୍ଧାର କରନ୍ତୁ ।

ରାମକୃଷ୍ଣ ଡାକ୍ତର ମୋହ ନିକଟକୁ ଏବେ ଆସନ୍ତି ନାହିଁ । ବିପଦବେଳେ ସମସ୍ତେ ହିଁ ବିପକ୍ଷ ହୁଅନ୍ତି । କେବେ ଦେଖାହେଲେ ସମସ୍ତ କହିବି ।

ଶ୍ରୀଛାମୁଙ୍କ ଅମୃତ ଦୃଷ୍ଟି ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ରହିଲି । ଇତି

ବିନୟାବନତ

ଶ୍ରୀ ରାଧାନାଥ ରାୟ

ରାଧାନାଥାଦି ଆଧୁନିକ ସାହିତ୍ୟିକଙ୍କ ସହିତ ଅନେକ ପ୍ରାଚୀନପନ୍ଥୀ ସଂସ୍କୃତଜ୍ଞ ପଣ୍ଡିତଙ୍କୁ ମଧ୍ୟ ସମଧିକ ସମ୍ମାନ ପ୍ରଦର୍ଶନ କରାଯାଇଥିଲା । ବଡ଼ପଣ୍ଡା ମହାଶୟଙ୍କୁ 'ବିକୁଳକବି' ଉପାଧି ପ୍ରଦାନ କରାଯାଇଥିଲା । ବିଖ୍ୟାତ ପଣ୍ଡିତ ଶିବକୁମାର ଶାସ୍ତ୍ରୀଙ୍କ ବିଦ୍ୱତ୍ତାରେ ମୁଗ୍ଧ ହୋଇ ସୁଢ଼ଳଦେବ ତାଙ୍କୁ ପାଞ୍ଚଶତ ମୁଦ୍ରା, ପାଟଯଥା ସହ ଏକ 'ଶିଲ୍ଡ଼' ପ୍ରଦାନ କରିଥିଲେ । ଶିଲ୍ଡ଼ରେ 'ଅଦ୍ରେବ ବିଦ୍ୟାରସଃ' ଖୋଦିତ ହୋଇଥିଲା । ବିଦ୍ୟାରତ୍ନଙ୍କ କନିଷ୍ଠଭ୍ରାତା ଦାମୋଦର ମିଶ୍ରଙ୍କୁ 'ପଦ୍ୟାଳଙ୍କାର' ଉପାଧି ପ୍ରଦତ୍ତ ହୋଇଥିଲା । ୧୯୦୧ରେ ବାମଣ୍ଡା ଦରବାରରୁ ପଦ୍ମଲୋଚନ ଦାସଙ୍କୁ 'କଥକ-ଶିରୋମଣି' ଉପାଧି ପ୍ରଦାନ କରାଯାଇଥିଲା । (ସ.ହି. ୨୦.୩.୧୯୦୧)

ସୁଢ଼ଳଦେବ ଅନେକ ସାରସ୍ୱତ ପୁରୁଷଙ୍କୁ ପୃଷ୍ଠପୋଷକତା ଯୋଗାଇଛନ୍ତି । ଏପରିକି ପାଞ୍ଚ ଟଙ୍କା ବେତନରେ କ୍ଲର୍କ କାମ କରୁଥିବା ଦୁର୍ଯ୍ୟୋଧନ ନାୟକଙ୍କର ଏକ

ଗୀତିନାଟ୍ୟ ଦେଖି ତାଙ୍କୁ କୋଡ଼ିଏ ଟଙ୍କା ବେତନରେ ବ୍ୟକ୍ତିଗତ ସହକାରୀ ରୂପେ ନିଯୁକ୍ତି ଦେଇଥିଲେ । ସୁତ୍ରଳ ପ୍ରେସ୍‌ର ପ୍ରୁଫ୍ ରିଡର୍ ନାରାୟଣଚନ୍ଦ୍ର ଦାସଙ୍କ ବିଦ୍ୱତ୍ତା ଓ ନାଟ୍ୟପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ସଚ୍ଚିଦାନନ୍ଦଙ୍କ ଗୃହଶିକ୍ଷକ ଓ ପରେ ତହସିଲଦାର ରୂପେ ନିଯୁକ୍ତି ଦେଇଥିଲେ । ନାରାୟଣଚନ୍ଦ୍ର ଦାସ ମଧୁବାବୁଙ୍କର କକେଇପୁଅ ଭାଇ । ସେ ଅନେକ ଗୀତିନାଟ୍ୟର ରଚକ । ବାମଣ୍ଡା ତଥା ବାମଣ୍ଡା ବାହାରର ଅନେକ ଲେଖକଙ୍କ ପୁସ୍ତକକୁ ସେ ନିଜ ପ୍ରେସ୍‌ରେ ପ୍ରକାଶ କରିଛନ୍ତି, ଅଥଚ ତାଙ୍କର ପୁସ୍ତକ ଓ ରଚନାବଳୀ ଲୋକଲୋଚନ ଅଗୋଚରରେ ରହିଯାଇଛି । ସୁତ୍ରଳଦେବ ଓଡ଼ିଆ ସାରସ୍ୱତ ଧାରାକୁ ରୁଦ୍ଧିମନ୍ତ କରିଥିଲେ ଅଥଚ ନିଜସ୍ୱ ରଚନା ପ୍ରତି ବିତସ୍ପୃହ ଥିଲେ । ନିଜର ମୂଲ୍ୟାୟନ କରିବାପାଇଁ ସେ ଉତ୍ତର ପୁରୁଷଙ୍କୁ ଛାଡ଼ି ଯାଇଥିଲେ ।

**ସଂପାଦକ ସୃଷ୍ଟି :**

ସୁତ୍ରଳଦେବ ଥିଲେ ପରଶମଣି । ତାଙ୍କ ସ୍ପର୍ଶରେ ଲୁହା ସୁନାରେ ରୂପାନ୍ତରିତ ହୋଇଯାଉଥିଲା । ବାଙ୍କୀର ସାମାନ୍ୟ ସ୍କୁଲ ଶିକ୍ଷକ ନୀଳମଣି ବିଦ୍ୟାରତ୍ନ ସୁତ୍ରଳଦେବଙ୍କ ସଂସ୍ପର୍ଶରେ ଆସି ଓଡ଼ିଶାର ବିଖ୍ୟାତ ସଂପାଦକ ଭାବରେ ସର୍ବମାନ୍ୟ ହୋଇପାରିଥିଲେ । ଏହାକୁ ଉପଲକ୍ଷ୍ୟ କରି ଫକୀରମୋହନ ଲେଖନ୍ତି—

> ''ଢଗାଶିର ଧରି ଏକା ପଡ଼ିଅଛ ନନା
> ପରଶ ମଣିକୁ ଧରି ଲୁହା ହୁଏ ସୁନା ।'' (ଉତ୍କଳ ଭ୍ରମଣଂ)

ବିଦ୍ୟାରତ୍ନ 'ସଂବଲପୁର ହିତୈଷିଣୀ'ରୁ ସଂପାଦକ ଜୀବନ ଆରମ୍ଭ କରିଥିଲେ । ପରେ ପରେ 'ଉତ୍କଳ ମଧୁପ', 'ପ୍ରଜାବନ୍ଧୁ', 'ଗଞ୍ଜାମ ଗୁଣଦର୍ପଣ' ଏବଂ ଶେଷ ସମୟରେ 'ଉତ୍କଳଦୀପିକା'ର ସଂପାଦନା ଦାୟିତ୍ୱ ଗ୍ରହଣ କରିଥିଲେ ।

ବାମଣ୍ଡା ଥିଲା ସଂପାଦକ ସୃଷ୍ଟିର କାରଖାନା । ଏଥିରୁ ଅନେକ ସଂପାଦକ ତାଲିମ ଲଭି ଓଡ଼ିଶା ବାଙ୍ମୟରେ ପ୍ରତିଷ୍ଠା ଲଭିଥିଲେ ଏବଂ ଓଡ଼ିଆ ପତ୍ରିକା ସଂପାଦନା କ୍ଷେତ୍ରକୁ ରୁଦ୍ଧିମନ୍ତ କରିଥିଲେ ।

ବିଦ୍ୟାରତ୍ନଙ୍କ କନିଷ୍ଠ ଭ୍ରାତା ଦାମୋଦର ମିଶ୍ର ହିତୈଷିଣୀ ସଂପାଦନାରେ ସହାୟତା କରୁଥିଲେ । 'ବିଜୁଳି'ର ସେ ମ୍ୟାନେଜର ଥିଲେ ଏବଂ ସହଯୋଗ କରୁଥିଲେ । ବାମଣ୍ଡା ପରିତ୍ୟାଗ ପରେ ସେ ଇଛାପୁରରୁ ପ୍ରକାଶିତ 'ଉତ୍କଳବାସୀ'ର ସଂପାଦନା ଗ୍ରହଣ କରିଥିଲେ ।

ବ୍ରଜବନ୍ଧୁ ମିଶ୍ର ତାଳଚେର ଜନ୍ମିତ ଜଣେ ଅନନ୍ୟ କାବ୍ୟପୁରୁଷ । ସେ ଶେଷ ପର୍ଯ୍ୟନ୍ତ ବାମଣ୍ଡାରେ ଅବସ୍ଥାନ କରୁଥିଲେ । 'ଉତ୍କଳବନ୍ଧୁ'ର ସେ ସଂପାଦକ ଥିଲେ । ବିଦ୍ୟାରତ୍ନଙ୍କ ପରେ ସେ ହିତୈଷିଣୀର ସଂପାଦନା ଗ୍ରହଣ କରିଥିଲେ । ସଂବଲପୁରରୁ ପ୍ରକାଶିତ ଉତ୍କଳସେବକ (୧୯୧୩)ର ପ୍ରଥମ ସଂପାଦକ ଥିଲେ ବ୍ରଜବନ୍ଧୁ । ୧୯୩୩

ବେଳକୁ ସେ ତାଳଚେରରୁ ପ୍ରକାଶିତ 'ଗଡ଼ଜାତବାସିନୀ'ର ସଂପାଦନା ଭାର ନିର୍ବାହ କରନ୍ତି ।

ଜଳନ୍ଧର ଦେବ 'ହିତୈଷିଣୀ' ଓ 'ଉତ୍କଳ ମଧୁପ' ସଂପାଦନାରେ ସହଯୋଗ କରିବା ସହିତ 'ଆଲୋଚନା' (୧୯୦୦) ଓ 'ଶଂଖ'ର ସଂପାଦନା ଗ୍ରହଣ କରିଥିଲେ ।

ଦାଶରଥି ରାଉତ ଶିକ୍ଷକତା ସହିତ 'ବିଜୁଳି'ର ସଂପାଦକ ପଦକୁ ଉନ୍ନୀତ ହୋଇଥିଲେ । ଏତଦ୍‌ବ୍ୟତୀତ ବଳଭଦ୍ର ଦେବ, ଭାଗିରଥି ରଥ, ଜଗନ୍ନାଥ ପଟ୍ଟନାୟକ, ଦୀନବଂଧୁ ପ୍ରଧାନ, ଦୀନବଂଧୁ ଗଡ଼ନାୟକ ପ୍ରମୁଖ ସାହିତ୍ୟିକ ହିତୈଷିଣୀ ସଂପାଦନାରେ ସମୟକ୍ରମେ ସଂପୃକ୍ତ ଥିଲେ ।

## କାବ୍ୟ ନାଟକର ସୃଷ୍ଟି :

ସୁଢ଼଼ଳଦେବଙ୍କ ପୃଷପୋଷକତାରେ ଉତ୍କୃଷ୍ଟ କାବ୍ୟସମୂହକୁ ନାଟ୍ୟରୂପ ପ୍ରଦାନରେ ବାମଣ୍ଡା ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ସଚ୍ଚିଦାନନ୍ଦଙ୍କ ରଚିତ 'ମାୟାଶବରୀ' ଓ 'ଭୀଷ୍ମ' କାବ୍ୟକୁ ବ୍ରଜବନ୍ଧୁ ମିଶ୍ର ନାଟ୍ୟରୂପ ପ୍ରଦାନ କରିଥିଲେ । ରାଧାନାଥଙ୍କ 'ଚନ୍ଦ୍ରଭାଗା' କାବ୍ୟକୁ ଦୁର୍ଯ୍ୟୋଧନ ନାୟକ ନାଟ୍ୟରୂପ ଦେଇଥିଲେ । ଏଗୁଡ଼ିକ ୧୯୦୨ରେ ନାଟ୍ୟରୂପଲଭି ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଥିଲା । ତାଳଚେର, ମାହାଙ୍ଗା, ବାଲିଅନ୍ତା ପ୍ରଭୃତି ନାଟ୍ୟଦଳ ଆସି ବାମଣ୍ଡାରେ ଏହିସବୁ ନାଟକ ଶିକ୍ଷାକରି ବିଭିନ୍ନ ସ୍ଥାନରେ ପ୍ରଦର୍ଶନ କରୁଥିଲେ । (ସ:ହି: ୧୯୦୨-୧୯୦୩)

## ସୁଢ଼଼ଳଦେବଙ୍କ ସୃଜନ କର୍ମ :

ସୁଢ଼଼ଳଦେବଙ୍କର ସୃଜନାତ୍ମକ ପ୍ରତିଭାର ପରାକାଷ୍ଠା ଚିଦ୍ରୋତ୍ପଳା, ବୀରବାମା ଓ କିଷ୍କିନ୍ଧ୍ୟା କାବ୍ୟ ତଥା ଜହ୍ନମାମୁଁ, ବସନ୍ତ ବର୍ଣ୍ଣନା ଓ ଜଣାଣ କବିତାରୁ ପ୍ରକାଶ ଲଭିଥାଏ । ଜାତୀୟ ଗୀତି ରଚନା କବିଙ୍କର ଉଦ୍ଦେଶ୍ୟ । ଭାରତୀୟ ପରଂପରାର ଐଶ୍ୱର୍ଯ୍ୟମଣ୍ଡିତ ଐତିହ୍ୟକୁ କବିଦୃଷ୍ଟି ଆଧୁନିକ ବାଙ୍ମୟରେ ଆରାଧନା କରିଛି । ସେଠି କାବ୍ୟର କଳାତ୍ମକ ରୂପ ଗୌଣ ହୋଇପାରେ, କିନ୍ତୁ କାବ୍ୟର ଅକ୍ଷୟ ସଂପଦ ରୂପେ ଭାବକୁ କବି ଅନଶ୍ୱର ମର୍ଯ୍ୟାଦା ପ୍ରଦାନ କରିଛନ୍ତି ।

## ଚିଦ୍ରୋତ୍ପଳା :

ପର୍ଯ୍ୟଟନ କ୍ରମେ ନୌକାଦ୍ୱାରା ସୁଢ଼଼ଳଦେବ ସଂବଲପୁରରୁ କଟକ ଯାଆନ୍ତି । ଏ ରୋମାଞ୍ଚକର ଏବଂ ବିପଦସଙ୍କୁଳ ଯାତ୍ରା କିପରି ତାଙ୍କର କବି-ହୃଦୟକୁ ଉତ୍‌ଫୁଲ୍ଲିତ କରିଛି ତାହାରି ଇତିବୃତ୍ତି ହିଁ ଏହି କବିତା । ଉତ୍କଳଭ୍ରମଣଂକୁ ପର୍ଯ୍ୟଟନ ସାହିତ୍ୟ ରୂପେ ଗ୍ରହଣ କଲେ ଚିଦ୍ରୋତ୍ପଳାକୁ କାବ୍ୟାକାରେ ପର୍ଯ୍ୟଟନ-ସାହିତ୍ୟର ଅନ୍ୟତମ ପ୍ରାରମ୍ଭିକ ନମୂନାରୂପେ ଗ୍ରହଣ କରାଯାଇପାରେ । ସୁଢ଼଼ଳ ମାନସର ଯଥାର୍ଥ ପ୍ରତିଫଳନ

ହିଁ ଚିତ୍ରୋତ୍ପଳା । ଚିତ୍ରୋତ୍ପଳା କବିଙ୍କ ଗଭୀର ମର୍ମସ୍ଥଳକୁ ସ୍ପର୍ଶ କରିଥିଲା । ଦରଦୀ କବି ତେଣୁ ନିଜର ଏକ କନ୍ୟାର ନାମ ମଧ୍ୟ ଚିତ୍ରୋତ୍ପଳା ରଖିଥିଲେ ।

ଚିତ୍ରୋତ୍ପଳା କାବ୍ୟ ପୂର୍ବରୁ ବର୍ଣ୍ଣନାମୂଳକ କାବ୍ୟ ଓଡ଼ିଆରେ ଅଙ୍ଗୁଳିମେୟ ରଚିତ ହୋଇଥିଲା । ଚିଲିକାର ସୃଷ୍ଟିକୌଶଳ ସହିତ କେତେକାଂଶରେ ଏହାର ସାମ୍ୟ ପରିଦୃଶ୍ୟ ହେଲେ ମଧ୍ୟ ଏହା ଏକ ମୌଳିକ କାବ୍ୟ । ଚିଲିକା କାବ୍ୟରେ ପ୍ରଥମଥର ରାଧାନାଥ ବର୍ଣ୍ଣନା ଧାରା ସହିତ ପ୍ରକୃତି ଚିତ୍ରଣର ସମନ୍ୱୟ ସାଧନ କଲେ । ତାଙ୍କ ପୂର୍ବରୁ ବର୍ଣ୍ଣନାତ୍ମକ କାବ୍ୟ ରୂପ ଗୋବିନ୍ଦ ରଥଙ୍କ କଲିକତା ବର୍ଣ୍ଣନ (୧୮୭୫), ମେଳାଦର୍ଶନ (୧୮୮୪) କଟକ ଦର୍ଶନ (୧୮୮୫), ଲାଟ ଦର୍ଶନ (୧୮୯୧) କବିତାକଳାପ (୧୮୭୮), ଦାମୋଦର ପଟ୍ଟନାୟକଙ୍କ କପିଳାସ କ୍ଷେତ୍ର (୧୮୮୫), ୧୮୮୨ରେ ଉତ୍କଳ ଦର୍ପଣରେ ପ୍ରକାଶିତ 'ଓଡ଼ିଶାର ନୈସର୍ଗିକ ଶୋଭା' ଶୀର୍ଷକରେ ଏକ ଦୀର୍ଘ କବିତା, ଗୋବିନ୍ଦ ମହାପାତ୍ରଙ୍କ ଦୃଶ୍ୟରାଜି ଓ ହିମାଚଳ (୧୮୯୧) କବିତା ହିଁ ଦୃଷ୍ଟିଗୋଚର ହୁଏ ।

ଏ ସମସ୍ତ ପୁସ୍ତକ ମଧ୍ୟରୁ କଲିକତା ଦର୍ଶନ, ମେଳାଦର୍ଶନ, କଟକ ଦର୍ଶନ ଓ ଲାଟଦର୍ଶନ ମୁଖ୍ୟତଃ ବର୍ଣ୍ଣନାତ୍ମକ ବା ଭ୍ରମଣ ବିବରଣୀମୂଳକ କାବ୍ୟ । କବିତା କଳାପର ପୂର୍ଣ୍ଣମୀର ନିଶାକାଳ, ପ୍ରକୃତିର ଶୋଭା, ପୁରୁଷୋତ୍ତମର କେତେକ ଦୃଶ୍ୟ, ପ୍ରଭାତ ପ୍ରଭୃତି କବିତାରେ ପ୍ରକୃତିର ଅନବଦ୍ୟ ରୂପ ପ୍ରତିଫଳିତ । କପିଳାସ କ୍ଷେତ୍ର, ଉତ୍କଳର ପ୍ରାକୃତିକ ଶୋଭା, ଦୃଶ୍ୟରାଜି ଓ ହିମାଚଳ ପ୍ରଭୃତି କାବ୍ୟ କବିତାରେ ମଧ୍ୟ ଯଥାସାଧ୍ୟ ପ୍ରାକୃତିକ ଚିତ୍ର ସ୍ଥାନ ଲଭିଛି ।

ସୁତ୍ରଳଦେବଙ୍କ ପୂର୍ବବର୍ତ୍ତୀ ତଥା ପ୍ରାକ୍ ଚିଲିକା କାବ୍ୟସ୍ୱରୂପ ବିଶ୍ଳେଷଣ ପାଇଁ ଏ ପ୍ରସଙ୍ଗରେ ଉଲ୍ଲିଖିତ ସଂକଳନ ସମୂହରୁ କିଛି ପଂକ୍ତି ଉଦ୍ଧାର କରାଯାଇପାରେ ।

ଗୋବିନ୍ଦରଥଙ୍କ କବିତା କଳାପର ପ୍ରଥମ ପଦରେ ହିଁ ପ୍ରକୃତିର ନିରାଜନା ପାଇଁ କବି ତତ୍ପର ।

''ଆହା କି ବିଚିତ୍ର ଗଗନ ସୁଚିତ୍ର
ଚାରୁତାରାବଳୀ ଦୀପରୂପେ ଜ୍ୱଳି
ଅପୂର୍ବ ସୁନ୍ଦର ପ୍ରକୃତି ରାଜ୍ୟେ ।
ନିସ୍ତବ୍ଧ ସକଳ ନାହିଁ ଗଣ୍ଡଗୋଳ
ସରିତର ଜଳ ହୁଏ କଲକଲ
ସୁନିର୍ମଳ ବିଧୁମଣ୍ଡଳ ରାଜେ ।'' (ପୂର୍ଣ୍ଣମୀର ନିଶାକାଳ)

'ପ୍ରକୃତିର ଶୋଭା' କବିତାରେ ପ୍ରକୃତିର ବିଭିନ୍ନ ବିଭାଗକୁ ରଥେ ସାବଲୀଳ ଭଙ୍ଗୀରେ ବର୍ଣ୍ଣନା କରିଛନ୍ତି ।

''ପ୍ରକୃତିର ଶୋଭା କି ଚମତ୍କାର
ଦେଖିଲେ ଆନନ୍ଦ ହୁଏ ଅପାର
ପ୍ରକାଣ୍ଡ ଗଗନ କର ବିଲୋକନ
ଅସୀମ ଅନନ୍ତ ଅଟେ ଅମ୍ବର
ନୀଳ, ପୀତ ବର୍ଣ୍ଣେ ତା କଳେବର
ଧନ୍ୟ ଚିତ୍ରିଅଛି ସେ ଚିତ୍ର କର ।''

ଚିଲିକାକୁ ସ୍ୱାଭାବିକ ପ୍ରକୃତି ବର୍ଣ୍ଣନାମୂଳକ ପ୍ରଥମ କାବ୍ୟରୂପେ ଅନେକତ୍ର ସ୍ୱୀକୃତି ମିଳିଛି । କିନ୍ତୁ ଚିଲିକା କାବ୍ୟର ବହୁ ପୂର୍ବରୁ ଗୋବିନ୍ଦ ରଥଙ୍କ କବିତା ଗୁଡ଼ିକରେ ପ୍ରକୃତି ଚିତ୍ରଣର ଅନାବିଳ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । ପୁରାଣ ଯୁଗୀୟ କାବ୍ୟରେ ପ୍ରକୃତି ଏକ ଉଦ୍ଦୀପନ ବିଭାବ ରୂପେ ସ୍ଥାନ ପାଇଥିଲା । କାବ୍ୟ ଯୁଗରେ ମଧ୍ୟ ପ୍ରକୃତି ନାଗରିକମାନଙ୍କ ସମ୍ଭୋଗ ବର୍ଣ୍ଣନାର ଅଂଶରୂପେ ସୀମିତ ଥିଲା । ଏହା ମାନବ ଚେତନାର ଅଙ୍ଗୀଭୂତ ନିର୍ଯ୍ୟାସ ରୂପେ ସ୍ଥାନ ପାଇନଥିଲା । ପ୍ରଥମ କରି ଗୋବିନ୍ଦ ରଥ ପ୍ରମୁଖଙ୍କ କବିତାରେ ପ୍ରକୃତିର ସୁରମ୍ୟ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ । ଉଦ୍ଧୃତ ପଂକ୍ତିସମୂହ ପ୍ରକୃତି ବର୍ଣ୍ଣନାରେ ଗୋବିନ୍ଦରଥଙ୍କ ଆଦ୍ୟ ପ୍ରୟାସକୁ ସଂଜ୍ଞିବୀତ କରେ ।

ଉତ୍କଳ ଦର୍ପଣ (୧୦/୨୦ ତା-୧୦-୫-୧୮୮୨)ରେ ପ୍ରକାଶିତ 'ଓଡ଼ିଶାର ନୈସର୍ଗିକ ଶୋଭା' କବିତାଟି ମଧ୍ୟ ପ୍ରକୃତିର ମହନୀୟ ବର୍ଣ୍ଣନାରେ ଋଦ୍ଧିମନ୍ତ । କବିତାର ପ୍ରଥମାଂଶ ବାଆର ପଦ ମାତ୍ର ଦର୍ପଣରେ ଦୃଷ୍ଟିଗୋଚର ହୋଇଥାଏ । କବିତାରେ ଓଡ଼ିଶାର ବିଭିନ୍ନ ପର୍ବତଶ୍ରେଣୀର ସୁଦୃଶ୍ୟ ବର୍ଣ୍ଣନା ପ୍ରଦତ୍ତ । କବିତାଟି ବର୍ଣ୍ଣନାମୂଳକ । ସୁନ୍ଦର ସାବଲୀଳ ଶବ୍ଦ ସଂଯୋଜନା ମାଧ୍ୟମରେ କବି ପ୍ରାକୃତିକ ଦୃଶ୍ୟ ଉପସ୍ଥାପନ କରିଛନ୍ତି । ଅତି ସାଧାରଣ ଚିତ୍ର ଅତି ସାଧାରଣ ଭାବେ ବର୍ଣ୍ଣିତ । ମେଘାସନ ପର୍ବତର ବର୍ଣ୍ଣନା—

''ମେଘାସନ ମେଘାସନ ନାମେ ଗିରିବର,
ଏହାଙ୍କ ମଧ୍ୟରେ ଦିଶେ ପରମ ସୁନ୍ଦର;
ତୁଷାର ମଣ୍ଡିତ ଦେହ ଅତି ମନୋହର
ବିଭୂତି ଭୂଷଣ ଅଙ୍ଗ ଯେହ୍ନେ ମହେଶ୍ୱର;
କିବା ତରୁରାଜି ଶୋଭା ଶୈଳ ଦେହପରେ,
ରୋମାବଳୀ ଶୋହେ ଯଥା ଶ୍ରୀହରିଙ୍କ ଉରେ;
ସୁମନ୍ଦ ପବନେ ତାହା ହେଉଛି ଦୋଳିତ,
ବିଭୁପ୍ରେମେ ପ୍ରେମିକ ଯେସନେ ରୋମାଞ୍ଚିତ ।''

ନୀଳଗିରି ପର୍ବତର ବର୍ଣ୍ଣନା ଷଷ୍ଠ ପଦରେ ଅନୁରୂପ ଭାବେ ହୋଇଛି–

''ନୀଳଗିରି ନାମେ ଏକ ଅଛି ଗିରିବର
ସୁନ୍ଦର ସୁନୀଳ ଅଙ୍ଗ ଯେହ୍ନେ ଜଳଧର;
ସ୍ୱର୍ଣ୍ଣଚୂଡ଼ ଶୃଙ୍ଗତାର ଅତି ଉଚ୍ଚତର,
ଅରୁଣ ଉଦୟେ କିବା ଦିଶେ ମନୋହର;
ଦିନାନ୍ତେ ଦ୍ୱିଗୁଣ ଶୋଭା ଧରେ ଶୈଳବର,
ପଶ୍ଚିମେ ନିଅନ୍ତି ରଥ ଯେବେ ଦିବାକର;
ବୋଧହୁଏ ସ୍ୱର୍ଣ୍ଣ-ଚୂଡ଼ ସ୍ୱର୍ଣ୍ଣ ସିଂହାସନେ
ସାଦରେ ବସନ୍ତି ଭାନୁ ସ୍ୱକୀୟ ଭବନେ ।''

ଏତଦ୍ ବ୍ୟତୀତ ପଞ୍ଚଲିଙ୍ଗ ଗିରି ଓ ଖଣ୍ଡଗିରିର ବର୍ଣ୍ଣନା କରିଛନ୍ତି । ବର୍ଣ୍ଣନା ଅତି ସରଳ, ନୂତନତ୍ୱ ବିହୀନ ।

ଦାମୋଦର ପଟ୍ଟନାୟକଙ୍କ କପିଳାସ କ୍ଷେତ୍ର (୧୮୮୫) ଏକ ବର୍ଣ୍ଣନାତ୍ମକ କାବ୍ୟ । କପିଳାସ କ୍ଷେତ୍ରର ଐତିହାସିକ ଆଖ୍ୟାନକୁ ବର୍ଣ୍ଣନା କରିଥିବା କବି ସ୍ୱୀକାର କରନ୍ତି । କିନ୍ତୁ ଏହି ଐତିହାସିକ ତଥ୍ୟର ସତ୍ୟତା ସଂପର୍କରେ କବି କୁହନ୍ତି, ''ସ୍ଥାନେ ସ୍ଥାନେ ଯେଉଁ ଐତିହାସିକ ବିବରଣ ଲେଖାଯାଇଅଛି ତାହା କୌଣସି ପୁସ୍ତକରେ ମିଳିନାହିଁ ଏ ହେତୁ ପୁରୁଷାନୁକ୍ରମିକ ଗଳ୍ପକୁ ବାଧ ହୋଇ ଅବଲମ୍ବନ କରିବାକୁ ହୋଇଅଛି ।'' (ଭୂମିକା) କାବ୍ୟଟି ତିନୋଟି ଅଧ୍ୟାୟ ବିଶିଷ୍ଟ । ତୃତୀୟ ଅଧ୍ୟାୟରେ କପିଳାସର ପ୍ରାକୃତିକ ବର୍ଣ୍ଣନା ସନ୍ନିବେଶିତ ହେବା କଥା କବି ଭୂମିକାରେ ସ୍ପଷ୍ଟ କରନ୍ତି । ତୃତୀୟ ଅଧ୍ୟାୟ ବ୍ୟତିରେକେ କାବ୍ୟର ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ସ୍ଥାନେ ସ୍ଥାନେ ପ୍ରକୃତିର ସୁନ୍ଦର ବର୍ଣ୍ଣନା ଶ୍ରୁତି ମଧୁର ହୋଇଛି ।''

ବହେ ନିର୍ଝର ଝରଝର ଶବଦେ
ଶ୍ରବଣେନ୍ଦ୍ରିୟ ସୁଖଲଭେ ଆମୋଦେ ।
ପୀୟୂଷ ସମବାରି ସ୍ୱାଦୁ ତାହାର
ଭାଗୀରଥ ପ୍ରକାଶ ନାହିଁ ବିକାର । (୧ମ ଅଧ୍ୟାୟ ପୃ- ୬)

୨ୟ ଅଧ୍ୟାୟ : ''ସଦା ମଳୟ ତହିଁ କରେ ସଞ୍ଚାର ।
ସଦା ପଲ୍ଲବ ଶୋଭେ ବୃକ୍ଷ ନିକର ।।
ସଦା ସର୍ବ କୁସୁମ ବୃନ୍ଦ ଶୋଭିତ ।
ସଦା ବିହଙ୍ଗକୁଳ ସଙ୍ଗୀତେ ରତ ।।
ନେତ୍ର ବିମୋହନ ଦୃଶ୍ୟ ନିକର
ଶ୍ରୁତି ମଧୁର ସ୍ୱନ ବିନା ଆଦର

କିଛି ନୁହେଁ ଗୋଚର ସେ ସୁଖବନେ
ସବୁ ଆନନ୍ଦମୟ ଦୁଃଖ ବିହୀନେ ।'' (ପୃ-୮)

ଏହି ସୂକ୍ଷ୍ମ ବର୍ଣ୍ଣନା ଗୁଡ଼ିକ ପାଠକ ମନରେ ଚିତ୍ର ପ୍ରତୀତି ସୃଷ୍ଟି କରିବାକୁ ଯଥେଷ୍ଟ । ତୃତୀୟ ଅଧ୍ୟାୟରେ କପିଳାସର ସୁରମ୍ୟ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଏଥିରେ ପ୍ରକୃତିର ଅନବଦ୍ୟ ରୂପ ଯେତିକି ସରଳ ସେତିକି ହୃଦୟଗ୍ରାହୀ । ଶବ୍ଦ ସଂଯୋଜନା ଆହ୍ଲାଦକର ।

''କାନନ କୁଞ୍ଜେବସି ବିହଙ୍ଗ କୁଳ
ସୁରବେ ବନଦେଶ କରି ଆକୁଳ
ଝଙ୍କାରନ୍ତି ଯେ ଯାହା କଣ୍ଠ ଯନ୍ତ୍ରରେ
ବୀଣା ଜିଣା ଭାରତୀ ହୋଏ ପଛରେ ।
ବହୁଛି ସୁଶୀତଳ ମନ୍ଦ ପବନ
ବନ ପୁଷ୍ପରୁ ହରି ସୁଗନ୍ଧ ଧନ ।
ନାହିଁ କେହି ଗ୍ରାହକ ତୋଳିବ ଫୁଲ
ଝଡ଼ି ସଢ଼ଇ ତେଣୁ ଅବନୀତଳ ।'' (ପୃ-୨୦)

ପ୍ରକୃତି ବର୍ଣ୍ଣନା ମଧ୍ୟରେ ଜାତୀୟ ଚେତନା ଉଦ୍ରେକ କରିବାର ସଫଳ ପ୍ରୟାସ କରିଛନ୍ତି କବି । କପିଳାସ ମନ୍ଦିରର ପ୍ରତିଷ୍ଠାତା ପ୍ରତାପରୁଦ୍ରଙ୍କ ବିଷୟ ବର୍ଣ୍ଣିତ ହେବା ସହିତ ତାଙ୍କର ପିତା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନକୁ ସ୍ମରଣର ଅବକାଶ ସୃଷ୍ଟି ହୋଇଛି କବିତାରେ । ଯାହାର କଳାତ୍ମକ ଚିତ୍ରଣ ଚିଲିକାରେ ରୂପ ପାଇଛି । ପୁରୁଷୋତ୍ତମଙ୍କ ବ୍ୟତୀତ ଢେଙ୍କାନାଳ ଭୂପତି ଶ୍ରୀତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ଗୁଣକୀର୍ତ୍ତନ କରାଯାଇଛି । ଗଙ୍ଗାଧରଙ୍କ ତପସ୍ୱିନୀ କାବ୍ୟର ଆଶ୍ରମେ ପ୍ରଭାତର ଦୃଶ୍ୟ ପରି ଏହି କାବ୍ୟରେ ମଧ୍ୟ ସନ୍ଧ୍ୟାଦେବୀଙ୍କୁ ପ୍ରକୃତି ଷଡୋଶ ଉପଚାରରେ ବନ୍ଦନା କରିଛି ।

''ପିନ୍ଧି ଈଷତ ଶୁଭ କୃଷ୍ଣ ରଙ୍ଗର
ଦୁକୂଳ ମନୋହର ନେତ୍ର ମଧୁର
ରମ୍ୟ ମୁକୁଟେ ଅଳ୍ପ ତାରକା ଖଞ୍ଜି
ମୃଦୁହସେ କଠିଣ ହୃଦୟ ରଞ୍ଜି ।
କରେ ସମୀର ଧୀରେ ଧୀରେ ଚାମର
ବିଞ୍ଚେ କୁସୁମ ବୃନ୍ଦ ଗନ୍ଧ ପ୍ରଖର
ବିହଙ୍ଗକୁଳ ପ୍ରୀତି ପ୍ରଫୁଲ୍ଲମନେ
ହୁଳହୁଳି ଦିଅନ୍ତି ଦେବୀ ବନ୍ଦନେ ।'' (ପୃ-୩୨)

ସରଳ ପ୍ରକୃତି ବର୍ଣ୍ଣନାର ପଟାନ୍ତରହୀନ ଦୃଷ୍ଟାନ୍ତ 'କପିଳାସ କ୍ଷେତ୍ର' କାବ୍ୟରେ ସହଜଲଭ୍ୟ ।

ଓଡ଼ିଆ ଓ ନବସମ୍ବାଦ (୨/୨୩) ତା ୨୮.୩.୧୮୮୮ ସଂଖ୍ୟାରେ କଟକ ଶ୍ରୀ ଶଃ-ଙ୍କ "ପ୍ରକୃତିପ୍ରତି" କବିତାଟି ପ୍ରକାଶିତ । ଏଥିରେ ପ୍ରକୃତିର ସ୍ୱଭାବ ସୁନ୍ଦର ରୂପର ବର୍ଣ୍ଣନା ସହିତ କବି ପ୍ରକୃତି ଦେବୀର ନିରାଜନା କରିଛନ୍ତି । ପ୍ରକୃତିର ସୌନ୍ଦର୍ଯ୍ୟରେ କବି ଆନନ୍ଦ ବିହ୍ୱଳ ।

"ଦେଖିଛି ଯେ ତୋର ଆସ୍ୟ ମନୋହର
ସୁଧାମୟ ହାସ୍ୟଭରା
ହୋଇ ସେ ପାଗଳ ଆନନ୍ଦ ବିହ୍ୱଳ
ସୁଖେ ଲୋଟୁଅଛି ଧରା ।
କିମୋହନ ରୂପ ଧରି ତୁ ପ୍ରକୃତି
ଭୁଲାଉ ତୁ ମୋର ମନ
ଅନ୍ତରୁ ଅନ୍ତର ହୁଏ କ୍ଳେଶଭାର
ଦେଖିଲେ ତୋ ବରାନନ ।
× × ×
ସୁନିର୍ମଳ ଝର ତଟିନୀର ନୀର
ପୀୟୂଷ ପ୍ରବାହ ସମ
ଉର୍ମ୍ମିହାର ଗଳେ ଅନନ୍ତସାଗର
ବିଶାଳତା ଅନୁପମ ।
ଆକର୍ଷି ମନକୁ ନେଇଯାଏ ଟାଣି
କେଜାଣେ ସେ କେଉଁ ଦେଶେ
ଶୋକ ତାପ ଆଦି ବ୍ୟସନ ଜଞ୍ଜାଳ
ନାହିଁ ଯହିଁ ପରବେଶେ ।
× × ×
ତୋତେ ହୃଦାସନେ ବସାଇ ଯତନେ
ଭକତି ଚନ୍ଦନ ବୋଳି
କଳ୍ପନା କୁସୁମେ ରଚି ବନମାଳା
ପୂଜିବି ଚରଣ ବେନି ।"

ପ୍ରକୃତିର ପ୍ରତିଟି ବିଭାଗକୁ ଚାଳିଶପଦର ପଦ୍ୟ ମଧ୍ୟରେ କବି ବର୍ଣ୍ଣନା କରିଛନ୍ତି ।

ଗୋବିନ୍ଦ ମହାପାତ୍ରଙ୍କ 'ହିମାଚଳେ' କବିତାରେ ପ୍ରକୃତି ବର୍ଣ୍ଣନାର ସ୍ୱରୂପ ଅତି ସାଧାରଣ । କବିତାଟି ଉତ୍କଳ ପ୍ରଭା (୧/୧) ଏପ୍ରିଲ-୧୯୯୧ରେ ପ୍ରକାଶିତ ହୁଏ ।

ହିମାଳୟ ଅଧିତ୍ୟକାର ସୁନ୍ଦର ବର୍ଣ୍ଣନା ଦେବାରେ କବି କାର୍ପଣ୍ୟ କରିନାହାନ୍ତି । ପ୍ରଭାରେ ପ୍ରକାଶିତ ଅନ୍ୟାନ୍ୟ କାବ୍ୟକର୍ମ ଅପେକ୍ଷା ଏହା ଉଜ୍ଜ୍ୱଳ ରତ୍ନରୂପେ ରାଧାନାଥ ସ୍ୱୀକାର କରନ୍ତି । ଯଦିଓ ପରବର୍ତ୍ତୀ ପର୍ଯ୍ୟାୟରେ ରାଧାନାଥ ନିଜ ମନ୍ତବ୍ୟକୁ ନିଜେ ଖଣ୍ଡନ କରିବାର ଚେଷ୍ଟା କରିଛନ୍ତି । 'ହିମାଚଳ' ଦୀର୍ଘ କବିତାଟି ସାବଲୀଳ ଶବ୍ଦ ସଜ୍ଜା ମଧ୍ୟରେ ଶ୍ରୁତିମଧୁର ହୋଇଛି ।

''ଏକ ଏକ ଗିରିଶୋଭା ଏକ ଶୃଙ୍ଗ ଶୋଭା
ହୃଦୟ ଫୁଲାଇ ଦିଏ, କେତେ ମନଲୋଭା ।
ଏକଶୃଙ୍ଗପଦ ତଳେ ଏକ ଶୃଙ୍ଗ ତାର କୋଳେ
ତାର ପାଶେ ଆଉ ଏକ ନିଜ ମଥା ତୋଳେ ।
ଦକ୍ଷିଣରେ ବାମ-ଗିରି, ବାମେ ଅନ୍ୟଗିରି
ବିରାଜିତ ନେତ୍ରପଥେ ଅନୁପମ ଶିରି ।''

ସୂର୍ଯ୍ୟଙ୍କ ତେଜରେ ହିମାଳୟ ଚୂଡା ମାର୍କତରୂପ ଧାରଣ କରି ଜନମନ ହରଣ କରେ । କବିଙ୍କ ଭାଷାରେ

''ତହିଁ ତଳେ ମାରକତ ଅଳିନ୍ଦ ମଧ୍ୟରେ
ଅଧିତ୍ୟକା ଦେଶେ ନେତ୍ର ରଚିର ସ୍ଥାନରେ ।
ସୁବିରଳ ସୁଚିକ୍କଣ ଦୀର୍ଘାୟିତ ଘନ,
ପ୍ରଭାତରୁ ପ୍ରଭାକର ହୋଇ ଉଦୟନ
ପରିକର ପ୍ରାୟେ ବେଶ କରନ୍ତି ମାର୍ଜନ
ହୀରକ ଚୂଡାରେ ଅଗ୍ରେ କରଦାନ କରି
ଉଜ୍ଜଳ କରନ୍ତି ମଣି ଶାଣ ଦେଲା ପରି
କାହିଁଅଛି ଆଉ ଏଡ଼େ ମହାମଣି ଖଣ୍ଡ ?
ଶାଣ ଦେଇଛନ୍ତି ଯାରେ ଆପେ ସେ ମାର୍ତ୍ତଣ୍ଡ ।''

ଏ ସମସ୍ତ କାବ୍ୟ ପ୍ରୟାଣ ସହିତ ଅନ୍ୟାନ୍ୟ ଅନେକ କବିଙ୍କର କବିତାରେ ପ୍ରକୃତି ଚିତ୍ରଣର କ୍ଷୀଣରୂପ ଦୃଶ୍ୟମାନ । ସମକାଳୀନ ପତ୍ର ପତ୍ରିକାରେ ପ୍ରକାଶିତ ଅନେକ କବିତା ପ୍ରକୃତିର ବିଭିନ୍ନ ବିଭାଗକୁ ଉପଜୀବ୍ୟ କରି ଗଢ଼ିଉଠିଛି । ସାମଗ୍ରିକ ପ୍ରକୃତିକୁ କଳାତ୍ମକ ବ୍ୟଞ୍ଜନାରେ ପରିସ୍ଫୁଟ କରିବାରେ 'ଚିଲିକା' ହିଁ ଅପୂର୍ବ ସୁଯୋଗ ସୃଷ୍ଟି କରିଛି । ଚିଲିକା ସହିତ ଏକାତ୍ମ କବିହୃଦୟ ପ୍ରକୃତିର ଅନଶ୍ୱର ଚିତ୍ରସଜ୍ଜାକୁ ରୂପ ଦେଇଛି । ଜଡ ପ୍ରକୃତି ପ୍ରଥମଥର କବିଦୃଷ୍ଟିରେ ଜୀବନ୍ତ ହୋଇଛି । ଓଡିଆ କବିତାରେ ପ୍ରକୃତି ଚିତ୍ରଣର ଯେଉଁ ସ୍ୱାଭାବିକତା ଆଲୋଚିତ କାବ୍ୟ ପରଂପରାରେ କ୍ଷୀଣ ଭାବେ ଦୃଶ୍ୟମାନ ତାହା ରାଧାନାଥଙ୍କ ଲେଖନୀରେ ଦୃଢ଼ ଭିତ୍ତିସ୍ଥାପନ କରିଛି ।

ମନୁଷ୍ୟ ଯେ ପ୍ରକୃତିର ଏକତମ ଅଂଶ ଏହାହିଁ ସେ ପ୍ରଥମେ ପ୍ରତିପାଦନ କଲେ । ''ରାଧାନାଥ ପ୍ରକୃତି ସହିତ ମନୁଷ୍ୟର ସଂପର୍କ ବୃହତ୍ତର ଓ ମହତ୍ତର ଦିଗରୁ ଧାରଣା କଲେ । ତାଙ୍କଠାରେ ଏକ ଦିଗରେ ପ୍ରାଚୀନ ଭାରତୀୟ ଆଦର୍ଶ ଓ ଆଧୁନିକ ଇଂରେଜ କବିଙ୍କ ଦୃଷ୍ଟିକୋଣ ପ୍ରସାରିତ ଥିଲା । ସେ ନୂତନ ଭାବରେ ଆମର ମାନସିକ ଭାବାବେଗ ସହିତ ପ୍ରକୃତିର ପ୍ରାଣପୂର୍ଣ୍ଣ ସମ୍ବନ୍ଧ ସ୍ଥାପନ କଲେ । ଚିଲିକାରେ ରାଧାନାଥଙ୍କ ପ୍ରକୃତି ଚିତ୍ରଣର ରୀତି ଓ ପ୍ରକୃତି ପ୍ରତି ଦୃଷ୍ଟିକୋଣ ସବୁଠାରୁ ପୁଷ୍କଳ ଭାବରେ ପ୍ରକାଶିତ ହୋଇଅଛି ।'' (ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଯୁଗ) ମିଶ୍ର ନରେନ୍ଦ୍ରନାଥ –ପୃ-୧୭୬-୧୭୭)

ରାଧାନାଥ ଚିଲିକାକୁ ଉପଜୀବ୍ୟ କରି ଓଡ଼ିଶାର ସାଂପ୍ରତିକ ଦୁର୍ଦ୍ଦଶା, ଅତୀତ ପ୍ରୀତି ଓ ଭବିଷ୍ୟତର ଆଶାବାଦ ପ୍ରଚାର କରିଛନ୍ତି । ଚିଲିକାରେ ପ୍ରକୃତି ଚିତ୍ରଣ ସହିତ ଦେଶପ୍ରେମର ଅନାବିଳ ଝଲକ ଦୃଷ୍ଟିଗୋଚର ହୁଏ । ଚିଲିକାରେ ପ୍ରଦତ୍ତ ଭାବବସ୍ତୁ ଓ ଶୈଳୀ ଏକ ନିରବଚ୍ଛିନ୍ନ ପରଂପରାର ଉତ୍କର୍ଷ ସୃଷ୍ଟି ଏହା ଏହି ଆଲୋଚନାରେ ପ୍ରତିପାଦିତ ହୋଇଛି ।

ଚିଲିକାର ଉତ୍ତର ସୃଷ୍ଟିରୂପେ ସୁନ୍ଦଳଦେବଙ୍କ ଚିତ୍ରୋତ୍ପଳା ମହତ୍ତର କାବ୍ୟ ଭାବନାର ପ୍ରକାଶକ । ଚିତ୍ରୋତ୍ପଳାରେ ପ୍ରକୃତି ବର୍ଣ୍ଣନାର ଉର୍ଜସ୍ୱଳ ଧାରା ମହାନଦୀକୁ କେନ୍ଦ୍ରିତ କରି ଚଳଚଞ୍ଚଳ । ପର୍ଯ୍ୟଟନ ସାହିତ୍ୟର ଅନ୍ୟତମ ଦୃଷ୍ଟାନ୍ତ ରୂପେ ଚିତ୍ରୋତ୍ପଳା ସ୍ୱୀକୃତ । ଆଲୋଚିତ ପୃଷ୍ଠଭୂମିରେ ଚିତ୍ରୋତ୍ପଳାର ମର୍ମାନୁଧ୍ୟାନ ସର୍ବାଦୌ କର୍ତ୍ତବ୍ୟ ।

ଚିତ୍ରୋତ୍ପଳା ପ୍ରାଚୀନ ଆଧୁନିକ କାବ୍ୟସମନ୍ୱୟର ସାର୍ଥକ ପ୍ରତିଭୂ । ଚିତ୍ରୋତ୍ପଳାର ଆଙ୍ଗିକ ଓ ଆତ୍ମିକ ବିଭବକୁ ଚତୁରଭାବେ ଚିତ୍ରିତ କରିଛନ୍ତି ରାଜକବି । ଏହାର ପ୍ରେମାନୁଭୂତି ଓ ସୌନ୍ଦର୍ଯ୍ୟବୋଧ ଅଭିମନ୍ୟୁ ସାମନ୍ତସିଂହାରଙ୍କ କୋଟୀକୁ ସ୍ପର୍ଶ କରେ । ଜାତୀୟ ଚେତନା ଓ ପ୍ରକୃତିପ୍ରୀତି ରାଧାନାଥୀ କାବ୍ୟଚର୍ଯ୍ୟାସହ ସାମ୍ୟ ପ୍ରଦର୍ଶନ କରେ । କଳ୍ପନା ପ୍ରବଣତା କବି ଯଦୁମଣିଙ୍କ ସମକକ୍ଷ । ଏହା ସହିତ ମର୍ତ୍ତ୍ୟପ୍ରୀତି ଓ ଅଧିଭୌତିକ ଚେତନା କବିଙ୍କର ନିଜସ୍ୱ ।

ମହାନଦୀ ସ୍ରୋତର ଅନୁକୂଳରେ ଯେଉଁ ଭାବନାରାଜି କବି ମନରେ ସୃଷ୍ଟି ହୋଇଥିଲା, ତାହାହିଁ ଶିଳ୍ପରୂପ ଲଭିଛି । ଅଳଙ୍କାର ଏବଂ ଶବ୍ଦାଡ଼ମ୍ବରପୂର୍ଣ୍ଣ ଆଙ୍ଗିକ ଅଥଚ ଆତ୍ମିକ ଯୁଗୋପଯୋଗୀ ଆଧୁନିକତାର ବାର୍ତ୍ତାବହ । ସୁନିୟନ୍ତ୍ରିତ ଶବ୍ଦସଜ୍ଜା ଅତି ପରିଚିତ ଚିତ୍ରକଳ୍ପ, ବୌଦ୍ଧିକ ଅବତାରଣା ମାଧ୍ୟମରେ ପ୍ରକୃତି ବର୍ଣ୍ଣନା ଚିତ୍ତାକର୍ଷକ ହୋଇଛି । ସାବଲୀଳଭାବେ ପ୍ରକୃତି କାବ୍ୟଗର୍ଭିତ ହୋଇଛି । ଭାଷା ସ୍ୱତଃସ୍ଫୂର୍ତ୍ତ ଓ ସ୍ୱଚ୍ଛନ୍ଦ ମାଧ୍ୟମରେ ଦୃଷ୍ଟି ସୀମାସ୍ଥ ସମସ୍ତ ଶୋଭାକୁ ଧରି ରଖିପାରିଛି;

''ମନ୍ଦବାତେ ବୀଚି-ମାଳା ବିସ୍ତାରୁଛି କମଳ ଅବୟବିନୀ
କୁଞ୍ଚିତ ସୁନୀଳ-ବସନରେ ମଣ୍ଡି ପୁଳିନ କାନ୍ତି-ଦାୟିନୀ

ମୌକ୍ତିକ-ମାଣିକ୍ୟ ମଣି-ଚୂର୍ଣ୍ଣ-ମଞ୍ଜୁ-ବାଲୁକା-ପୂର୍ଣ୍ଣ-ଉଦର
ଯେତେଦୂର ଧାଇଁ ପାରୁଅଛି ଚକ୍ଷୁ ନଛାଡ଼େ ଶୋଭା ଆଦର ।'' (ଚିତ୍ରୋତ୍ପଳା)

ପ୍ରକୃତି ଅଧ୍ୟୟନରେ କବିଙ୍କର ପାରଦର୍ଶିତା କବିତାର ପ୍ରତି ଛତ୍ରେ ଛତ୍ରେ ଫୁଟି ଉଠିଛି । ନିଜର ଅନୁଭୂତିସିଦ୍ଧ ଅନେକ ମୌଳିକ ଚିତ୍ର ପ୍ରଦାନରେ କବିତା କଳାତ୍ମକ ସିଦ୍ଧି ଲଭିଛି । ଯେପରି–

–'ଆଘାତିତ ସର୍ପପରି ତଟିନୀର ଧାର'
–'ଫାଶି ଦେଉଛନ୍ତି ଧୀବରେ ମୀନକୁ ବଡୀଶ ରଜ୍ଜୁ ଲଗାଇ'
–'କପୋଳ ସିନ୍ଦୂର ଶିରୀଟି ସଦୃଶ କାହିଁ ତଟନୀ ସିକତା'
–'ପଲାଶ-ସ୍ତବକ-ଦୀପେ କରାଉଛି ବାତହାତେ ବନ୍ଦାପନା'

ଏ ମୌଳିକ ପ୍ରୟୋଗ ସୁଢ଼ଳଦେବଙ୍କ କାବ୍ୟସିଦ୍ଧିକୁ ପ୍ରମାଣିତ କରେ । ମର୍ତ୍ତ୍ୟପ୍ରୀତିର ଅପୂର୍ବ ମହକ ଆଣିଦିଏ କବିତାର ଅନେକ ପଙ୍କ୍ତି । ରାଜପୁରୁଷଠାରୁ କବିପୁରୁଷ ମହତ୍ତର ଭାବେ ଉଭାହୁଏ । ସଂବେଦନଶୀଳ ଏ ରାଜକବି ଗ୍ରାମ୍ୟ ଲଳନାଙ୍କ ନଦୀରେ ସ୍ନାନ ଏବଂ ଜଳ ଆନୟନର ସୁଦୃଶ୍ୟ ବର୍ଣ୍ଣନାକୁ କଳାତ୍ମକ ବ୍ୟାପ୍ତି ପ୍ରଦାନ କରନ୍ତି–

''ଉଷା କାଳେ ସ୍ନାନଶୀଳା ନାରୀବୃନ୍ଦେ ତୀର ହୋଇଯାଏ ଘନ
ଅମଳ ତରଙ୍ଗେ ଦଳି ଦେଉଥାଏ ରମଣୀ-ଲାବଣ୍ୟ-ବନ
ମୁଗ୍ଧା ମଧ୍ୟା ବୃଦ୍ଧା ପ୍ରଭୃତି ଲଳନା ଶ୍ରେଣୀ ଶ୍ରେଣୀ ମାଳ ମାଳ
ଘଟାଙ୍କିତ ଶିର କଟି-ହସ୍ତ ହୋଇ ଯାଉଛନ୍ତି ବାମା ଜାଳ ।''

ନିଜସ୍ୱ ମାତୃଭୂମିର ଉତ୍କର୍ଷତା ପ୍ରତିପାଦନ ପାଇଁ କବି ମହାନଦୀକୁ ଗଙ୍ଗାର ସମପର୍ଯ୍ୟାୟବାଚୀ ରୂପେ ସ୍ୱପ୍ନ ଦେଖିଛନ୍ତି । କବି ଚକ୍ଷୁରେ ମହାନଦୀ ମହୀୟାନ ଗରୀୟାନ ହୋଇଉଠିଛି । ''କଳୌ ଚିତ୍ରୋତ୍ପଳା ଗଙ୍ଗା'' ରୂପେ କବି ନିଜ ପ୍ରାଣର ପବିତ୍ର ଆକୂତି ଜଣାଇଛନ୍ତି, 'ନଦୀ ତତ୍ର ମହାପୁଣ୍ୟା ବିନ୍ଧ୍ୟାପାଦ ବିନିର୍ଗତା ଚିତ୍ରୋତ୍ପଳେତି ବିଖ୍ୟାତା ସର୍ବପାପହରାଶୁଭା ।'' ରାଜପଦର ବିପର୍ଯ୍ୟସ୍ତ ମାନସିକତା ନିଷ୍ଠୁର କର୍ତ୍ତବ୍ୟର ତାଡ଼ନାଭିତରେ କବି ହୃଦୟ ତାଙ୍କର କିଛିଟା ଆଶ୍ୱସ୍ତି, କିଛିଟା ସଂବେଦନା ଲୋଡ଼ିଛି । ଗତାନୁଗତିକ ଜୀବନର ଧାରାରୁ କିଛିଟା ମୁକ୍ତି କିଛିଟା ବିଚ୍ୟୁତି ହିଁ ସୁଢ଼ଳଦେବଙ୍କୁ କବି କରିଛି ।

ରାଧାନାଥଙ୍କ ଚିଲିକା କାବ୍ୟର 'କ୍ଷୁଦ୍ର ସିପ୍ରା-ସ୍ରୋତ ବିଖ୍ୟାତ ଜଗତେ/ମହାନଦୀ ନାମ ରହିଲା ଗୁପତେ''ର ନିରାଶା ବାଣୀ ରାଜକବିଙ୍କୁ ପ୍ରବୋଧିତ କରିବା ମନେହୁଏ । ରାଧାନାଥଙ୍କ ବାଣୀକୁ ସ୍ମରଣ କରି ରାଜକବି କୁହନ୍ତି–

''ତୋ ତୀର ବିହାରୀ--ରାୟ କବିବର ଚିନ୍ତାଶୀଳ ଅବିରତେ
''ମହାନଦୀ ନାମ ରହିଲା ଗୁପତେ' ବୋଲି ଭାବୁଥାନ୍ତି ତୋତେ।''
(ଚିତ୍ରୋତ୍ପଳା)

ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରସିଦ୍ଧ ହିନ୍ଦୀ କବି ଲୋଚନ ପ୍ରସାଦ ପାଣ୍ଡେୟ ତାଙ୍କର ମହାନଦୀ (୧୯୧୫) କାବ୍ୟରେ ରାଧାନାଥ ଏବଂ ସୁଢ଼ଳଦେବଙ୍କ ଏ କୃତିତ୍ୱକୁ ସମ୍ମାନର ସହ ସ୍ମରଣ କରିଛନ୍ତି।

କ୍ଷୁଦ୍ର ସିପ୍ରାସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ
ଚିଲିକାର କବି ଅମର ଅକ୍ଷରେ
ନଚିତ୍ରି-ତୋଚିତ୍ର ସାହିତ୍ୟ ପଟରେ
କି ଭାବି ତୋ' ପାଇଁ ଦୁଇ ଧାଡ଼ି ମାତ୍ର
ଲେଖିଲେ, (ଆଶ୍ଚର୍ଯ୍ୟ ଅସ୍ଥିର ମୋ ଗାତ୍ର)।
ଶୁଣି ସେ କ୍ରନ୍ଦନ ରାଜର୍ଷି ସୁକବି
କୌଶଳେ ଚିତ୍ରିଲେ ଚିତ୍ରୋତ୍ପଳା ଛବି।'' (ମହାନଦୀ)

ଆଳଙ୍କାରିକ କବି ଚିତ୍ରୋତ୍ପଳାର ପ୍ରତି ଅଂଶରେ ଅଳଙ୍କାର ସଂଯୁକ୍ତ କରି ଅଳଙ୍କାର-ଶ୍ରଦ୍ଧାଳୁ ଛାତ୍ରଙ୍କ ପାଇଁ ଫୁଟ୍‌ନୋଟ୍‌ରେ ପ୍ରଦର୍ଶିତ କରିଛନ୍ତି। ଚିତ୍ରୋତ୍ପଳା ୧୮୯୨ରେ ସଂବଲପୁର ହିତୈଷିଣୀରେ ପ୍ରଥମେ ପ୍ରକାଶ ଲଭି ଲୋକପ୍ରିୟତା ଅର୍ଜନ କରେ। ପରେ ପରେ ଏହାର ଅନେକ ସଂସ୍କରଣ ପ୍ରକାଶ ଲଭେ। ଚିତ୍ରୋତ୍ପଳା ଉପରେ ଅନେକ ସମାଲୋଚନା ତଥା ପ୍ରତି-ସମାଲୋଚନା ସଂବଲପୁର ହିତୈଷିଣୀ, ଉତ୍କଳସାହିତ୍ୟ ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ।

## ବୀରବାମା

ବୀରବାମା ଓଡିଶାର ପ୍ରଥମ ଐତିହାସିକ କାବ୍ୟ। ଏହା ଜାତୀୟବାଦୀ ଚେତନାରେ ଉଦ୍‌ବୁଦ୍ଧ। ଭାରତୀୟ ଜନମାନସରେ ଜାତୀୟତାବୋଧ ଉଦ୍ରେକ କରିବା ପାଇଁ ଐତିହାସିକ ଚରିତ୍ରମାନଙ୍କର ଆଦର୍ଶ ପ୍ରଖ୍ୟାପନ ଅପରିହାର୍ଯ୍ୟ ହୋଇଉଠିଥିଲା। ଐତିହାସିକ ବୀର ପୁରୁଷଗଣଙ୍କ ଜୀବନର ବହୁମୁଖୀ ଘଟଣାର ବିବରଣ ଦେଇ ସମାଜକୁ ଆଗେଇବାକୁ ପ୍ରେରଣାଦେବା ଐତିହାସିକ ରଚନାର ମୂଳଲକ୍ଷ୍ୟ। ଇତିହାସ କାବ୍ୟବସ୍ତୁ ରୂପେ ଗୃହୀତ ହୁଏ। ସାହିତ୍ୟ ଐତିହାସିକ ବ୍ୟକ୍ତିମାନଙ୍କର ଚିନ୍ତା, ଚେତନାର ଉଦାତ୍ତରୂପକୁ ପ୍ରତିଫଳିତ କରେ। ଫଳରେ ଐତିହାସିକ କାବ୍ୟ ପାଠକ ପ୍ରାଣରେ ଯୁଗଯୁଗର ଉତ୍‌ଥାନ ପତନର ଚିତ୍ର ଉତ୍ତୋଳିତ କରି ଉପଯୁକ୍ତ ପଥର ସନ୍ଧାନଦିଏ। ଶାଶ୍ୱତ ଜୀବନ ଗଠନ, ସମୃଦ୍ଧ ଦେଶ-ନିର୍ମାଣ ଦିଗରେ ଐତିହାସିକ କାବ୍ୟର ଗୁରୁତ୍ୱ

ସର୍ବାଧିକ । ଏହି ପ୍ରେକ୍ଷାପଟରେ ବୀରବାମା କାବ୍ୟ ଲକ୍ଷ୍ମୀବାଈଙ୍କ ଚରିତ୍ରକୁ ଆଦରିନେଇ ସଫଳ ହୋଇଛି । କବି କେବଳ ଐତିହାସିକ ବ୍ୟାଖ୍ୟାକାରଟିଏ ମାତ୍ର ନହୋଇ ଜୀବନ ସତ୍ୟର ଅନଶ୍ୱର ଶିଳ୍ପୀଟିଏ ହୋଇଛନ୍ତି ।

ବୀରବାମା ପ୍ରକାଶ ପୂର୍ବରୁ ଓଡିଶାରେ ରଚିତ କାହାଣୀକାବ୍ୟରୂପେ ନିମ୍ନ ରଚନା ଗୁଡିକ ଦୃଷ୍ଟିଗୋଚର ହୁଏ ।

୧ : ଭ୍ରମ ଭଞ୍ଜନ (୧୮୬୮) ଜଗନ୍ମୋହନ ଲାଲ ।
୨ : ପ୍ରେମତରୀ (୧୮୭୮) ରାମଶଙ୍କର ରାୟ ।
୩ : ଅଙ୍ଗଦବିଜୟ (୧୮୭୯) ରୁଦ୍ରନାରାୟଣ ପଟ୍ଟନାୟକ ।
୪ : ବିଧବା ବିବାହ (୧୮୮୩) ଗୋବିନ୍ଦରଥ ।
୫ : କିର୍ତ୍ତୀ କଳାପ (୧୮୮୬) ଗୋବିନ୍ଦ ମହାପାତ୍ର ।
୬ : ନନ୍ଦିକେଶ୍ୱରୀ (୧୮୮୭) ରାଧାନାଥ ରାୟ ।
୭ : ସୁଲୋଚନା (୧୮୮୯) ରାମକୃଷ୍ଣ ସାହୁ ।
୮ : ପାର୍ବତୀ (୧୮୯୦) ରାଧାନାଥ ରାୟ ।
୯ : ବୈଦେହୀ ବିଳାପ (୧୮୯୧) କହ୍ନେଇଲାଲ ବସୁ ।

ଉଲ୍ଲିଖିତ କାବ୍ୟ ସମୂହ ଐତିହାସିକ ନୁହେଁ । ରାଧାନାଥଙ୍କ କାବ୍ୟରେ ଐତିହାସିକ ତଥ୍ୟ ଅପେକ୍ଷା କଳ୍ପନାର ପ୍ରାବଲ୍ୟ ଅତ୍ୟଧିକ । ଗ୍ରୀକ୍ କଥାବସ୍ତୁ ଆହରଣ କରି ଦେଶୀୟ ଆଧାର ଉପରେ ଏଗୁଡିକ ନିର୍ମିତ । ଏହି ସମସ୍ତ କାବ୍ୟମଧ୍ୟରୁ କିର୍ତ୍ତୀକଳାପ ଢେଙ୍କାନାଳ ରାଜା ମହୀନ୍ଦ୍ର ବାହାଦୂରଙ୍କ ମୃତ୍ୟୁରେ (୧୮୭୭) ଲିଖିତ ଶୋକ ସଂଗୀତ । ଏଥିରେ ରାଜାଙ୍କ ଗୁଣ କୀର୍ତ୍ତନ କରାଯାଇଛି । ରାଜାଙ୍କ ଜୀବନ ଚରିତ ସମକାଳୀନ ଘଟଣା ହୋଇଥିବାରୁ ତାହାକୁ ଐତିହାସିକ ତଥ୍ୟ ରୂପେ ଗ୍ରହଣ କରିବା ସମିଚୀନ ହେବନାହିଁ । ବରଂ ଏହାକୁ ଏକ ଶୋକ ସଂଗୀତ ରୂପେ ମାନ୍ୟତା ଦିଆଯାଇପାରେ ।

ବୀରବାମାର ବହୁପୂର୍ବରୁ ପ୍ରାଚୀନ ଧରଣର ଐତିହାସିକ କାବ୍ୟ ସମରତରଙ୍ଗ ଏବଂ ଦୁଇ ତିନୋଟି ଅନ୍ୟାନ୍ୟ କାବ୍ୟ ପ୍ରକାଶ ପାଇଛି । ଇତିହାସର କାହାଣୀ ଉପରେ ଅତ୍ୟଧିକ ବାକ୍‌ପଲ୍ଲବନ ଏ ପର୍ଯ୍ୟାୟର କବିତା ଗୁଡିକର ଐତିହାସିକତାକୁ ନଷ୍ଟ କରିଛି । ଆଧୁନିକ ଯୁଗୀୟ ନିରୋଳା ଐତିହାସିକ କାବ୍ୟର ପ୍ରଥମ ଦୃଷ୍ଟାନ୍ତ ରୂପେ ବୀରବାମାକୁ ଗ୍ରହଣ କରାଯାଇପାରେ ।

ସଂବଲପୁର ହିତୈଷିଣୀ ୧୫-୧୧-୧୮୯୩ ସଂଖ୍ୟାରେ ଦାମୋଦର ମିଶ୍ରଙ୍କ ଐତହାସିକ କାବ୍ୟ 'ଦୁର୍ଗାବତୀ' ପ୍ରକାଶ ପାଏ । ସେହିବର୍ଷ କାବ୍ୟଟି ବାମଣ୍ଡାରୁ ପୁସ୍ତକାକାରେ ମଧ ପ୍ରକାଶ ଲଭେ । ଏହାର ସମାଲୋଚନା କରିବାକୁ ଯାଇ

ଚନ୍ଦ୍ରମୋହନ ମହାରଣା କୁହନ୍ତି, 'ଦୁର୍ଗାବତୀ' ଐତିହାସିକ କାବ୍ୟ । ଏହି ଶ୍ରେଣୀର କାବ୍ୟ ଓଡ଼ିଆ ଭାଷାରେ ବୋଧହୁଏ ଦ୍ୱିତୀୟବାର ପ୍ରଚାରିତ ହେଲା । ଉତ୍କଳ ସାହିତ୍ୟର ଏହି ନବଯୁଗରେ ଆମ୍ଭେମାନେ ଦ୍ୱିତୀୟବାର ଏପରି କବିତାମୃତ ପାନକରିବାର ଅବସର ପାଇଲୁଁ ।'' (ସହି-୫/୫ ତା ୧୧-୪-୧୮୯୪)

ଚନ୍ଦ୍ରମୋହନଙ୍କ ଏହି ପରୋକ୍ଷ ଇଙ୍ଗିତ ବୀରବାମାକୁ ପ୍ରଥମ ଐତିହାସିକ କାବ୍ୟର ମାନ୍ୟତା ପ୍ରଦାନକରେ । ଆଧୁନିକ ଓଡିଆ ସାହିତ୍ୟରେ ରୁଚିନିଷ୍ଠ କାବ୍ୟଚର୍ଯ୍ୟାରେ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀ ସମ୍ମତ ପ୍ରଥମ ଐତିହାସିକ କାବ୍ୟ ବୀରବାମା ।

'ଚିତ୍ରୋତ୍ପଳା'ର ଶୈଳ୍ପିକ ସିଦ୍ଧି 'ବୀରବାମା' କବିତାରେ ଉତ୍କର୍ଷତାର କୋଟୀକୁ ସ୍ପର୍ଶ କରିପାରି ନାହିଁ । ଏ କବିତାରେ ଜଣେ ଅବଳା ନାରୀ କିପରି ମାତୃଭୂମିର ଦାୟରେ ଜାତୀୟତାବୋଧରେ ଅନୁପ୍ରାଣିତ ହୋଇ ରଣତାଣ୍ଡବିନୀ ସାଜିଛି, ତା'ର ବର୍ଣ୍ଣନା ରହିଛି । ସୁଢ଼ଳଦେବଙ୍କର ଓଡ଼ିଆ ପାଠକଙ୍କୁ କହିବାର କଥା ମାତ୍ର ଏତିକି । କିନ୍ତୁ ଏହାରି ଅନ୍ତରାଳରେ ଯେଉଁ ଜାତୀୟତାବୋଧର ଚେଙ୍କା ରହିଛି, ତାହାହିଁ ତାଙ୍କର ସୃଷ୍ଟି ଆଭିମୁଖ୍ୟ । ସୁଢ଼ଳଦେବଙ୍କ ସ୍ୱୀକାରୋକ୍ତି ପ୍ରଣିଧାନଯୋଗ୍ୟ–''ଆମ୍ଭର କୌଣସି ଉଦ୍ଦେଶ୍ୟ ନୁହେଁ, କେବଳ ଲକ୍ଷ୍ମୀବାୟୀ ଯାହା ହିନ୍ଦୁକୁଳ ଲାବଣ୍ୟ-ସରଃ-ସରୋଜିନୀରେ କୁଳିଶ ସହିଷ୍ଣୁତାର ଅପୂର୍ବ ଛଟା ଦେଖାଇଛନ୍ତି ତାହାହିଁ ପାଠକମାନଙ୍କୁ ଜଣାଇବାର ବାସନା ମାତ୍ର ।'' (ଭୂମିକା)–ଏତିକି କହିବା ଭିତରେ ଅନେକ ଅକୁହା ରହିଗଲା । ଦୃଷ୍ଟାନ୍ତ ମାତ୍ର ପାଠକ ସମ୍ମୁଖରେ ଉପସ୍ଥାପିତ କରାଗଲା, ବାକି କାମ ପାଠକର– ଓଡ଼ିଆର, ଭାରତୀୟର । ଏହାହିଁ ଜାତୀୟତାବୋଧର ମର୍ମବାଣୀ । ଲୋକଙ୍କୁ ଚେତେଇଦେବା ହିଁ କବିର କର୍ମ । ଇଂରେଜ ରାଜତ୍ୱରେ ଏକ ପ୍ରାନ୍ତୀୟ ରାଜ୍ୟର କର୍ତ୍ତା ହୋଇ ଇଂରେଜ ବିରୋଧୀ ଲକ୍ଷ୍ମୀବାଈଙ୍କ ଅପୂର୍ବ ସାହାସକୁ ବାହାବା ଜଣାଇବା ମାତୃପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଦେଖାଯାଏ ଏ କାବ୍ୟରେ ସୁଢ଼ଳଦେବ ଇଂରେଜ ଶାସନର ନୀରବ ପ୍ରତିବାଦ ମାତ୍ର କରିଛନ୍ତି । କବି ରାଜା ହୋଇପାରନ୍ତି ତଥାପି ସେ ଭାରତୀୟ । ସେହି ଆର୍ଯ୍ୟ ରକ୍ତ ତାଙ୍କ ଧମନୀରେ ପ୍ରବାହିତ । ଏ ପରିପ୍ରେକ୍ଷୀରେ 'ବୀରବାମା' ଏକ ସାର୍ଥକ ଜାତୀୟ କବିତା । ପ୍ରବଳ ପ୍ରତାପୀ ଇଂରେଜ ଶାସନ ବିରୁଦ୍ଧରେ କେବଳ ଏତିକି ନୁହେଁ ବରଂ ଅକୁତୋଭୟ ସୁଢ଼ଳଦେବ ନିଜର ରାଜୋଦ୍ୟାନରେ ଲକ୍ଷ୍ମୀବାଈଙ୍କର ଏକ ଅଶ୍ୱାରୋହିଣୀ ପ୍ରତିମା ଗଠନକରି ସ୍ଥାପନ କରିଥିଲେ ଏବଂ ଇଂରେଜ ରାଜପୁରୁଷମାନଙ୍କୁ ବିହାରପାଇଁ ଉଦ୍ୟାନକୁ ନିମନ୍ତ୍ରଣ କରାଯାଉଥିଲା ।

'ବୀରବାମା' କାବ୍ୟ ପରାଧୀନ ଭାରତବର୍ଷର ଜାତୀୟତାର ବୀଜ ବପନ କରିଥିଲା । ବ୍ରିଟିଶ ଅଧୀନସ୍ଥ ଏକ ପ୍ରାନ୍ତୀୟ ଶାସକ ହୋଇ ମଧ ସେ ଇଂରେଜ

ରାଜତ୍ୱକୁ ସମାଲୋଚନା କରିବାକୁ ପଶ୍ଚାତ୍‌ପଦ ହୋଇ ନଥିଲେ । ମାତୃଭୂମିର ମହାନତା ପ୍ରଦର୍ଶନ ସମୟେ ଇଂରେଜମାନଙ୍କୁ ଗୌଣଭାବେ ସେ ଚିତ୍ରଣ କରିଛନ୍ତି ।

''ସବୁକାଳେ ଭୂମାତାର ଧର୍ମ ଏକାସାକ୍ଷୀ
ଅଧର୍ମ ହୋଇଲେ ଉଠେ ସେ ରୁଧିର ମାଖି ।
ଧର୍ମହାନିରେ ଉତ୍ତପ୍ତ ହୁଅଇ ରୁଧିର
ଛାତି ଫୁଲାଇ ଉଠନ୍ତି ଭାରତ ପ୍ରବୀର ।
ବ୍ରିଟିଶ କେଶରୀ ବିପକ୍ଷରେ ଶସ୍ତ୍ର ଧରି
ବାହାରିଲେ ହେଲେ ପଛେ କୃତାନ୍ତରେ ବରି ।'' (ବୀରବାମା)

ଲକ୍ଷ୍ମୀବାଈଙ୍କ ରଣତାଣ୍ଡବିନୀ ବେଶକୁ ଓଜସ୍ୱିନୀ ଭାଷାରେ ବର୍ଣ୍ଣନା କରିଛନ୍ତି ରାଜକବି–

''ଇଂରାଜ-ସୈନ୍ୟ-ଅଟବୀ-ବସନ୍ତ-ବିହାରୀ,
ମୃଗୟା କରୁଛି ନରସିଂହ ମାରି ମାରି ।
କିବା ରକ୍ତାଂଶୁକ ପରିଧାନୀ ବନଦେବୀ
ବୀରବେଶେ ଖେଳୁଛନ୍ତି ଅଶ୍ୱପୃଷ୍ଠ-ସେବୀ ।
ସୃକ୍‌କଣୀ ଲେହନ କରି ସେ ରମଣୀ-ବ୍ୟାଘ୍ରୀ
କୃପାଣ ଶୋଣିତ ଧାରେ ହୋଇଛି ରକ୍ତାଂଘ୍ରି ।'' (ବୀରବାମା)

ଐତିହାସିକ ଚରିତ୍ରକୁ ନେଇ ଗୁରୁଗମ୍ଭୀର ଧ୍ୱନିରେ କାବ୍ୟ ରଚନାର ପରଂପରା ଏଇଠୁ ଆରମ୍ଭ ହେଲା । 'ବୀରବାମା' ସମ୍ବଲପୁର ହିତୈଷିଣୀ (୬.୯.୧୮୯୩) ପୃଷ୍ଠାରେ ପ୍ରଥମେ ପ୍ରକାଶ ପାଇଥିଲା । ପରେ ପରେ ପୁସ୍ତକାକାରେ ପ୍ରକାଶ ଲଭିଥିଲା । ଏହା ଏକ ଅସଂପୂର୍ଣ୍ଣ କାବ୍ୟ । ଏହାକୁ ସମ୍ପୂର୍ଣ୍ଣ କରିବାପାଇଁ ଉଦ୍ୟମ କରି ମଧ୍ୟ ବିଭିନ୍ନ କାର୍ଯ୍ୟୋପଲକ୍ଷେ ରାଜକବି ସମ୍ପୂର୍ଣ୍ଣ କରିପାରି ନଥିଲେ । ଏ କାବ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ସେ ମହାରାଷ୍ଟ୍ରୀୟ ଭାଷାରେ ଲିଖିତ ଲକ୍ଷ୍ମୀବାଈ ଚରିତ ଆଣି ଉତ୍କଳାନୁବାଦ କରିବାକୁ ଇଚ୍ଛା କରିଥିଲେ । ଉକ୍ତ ପୁସ୍ତକକୁ ସେ ଭକ୍ତକବି ମଧୁସୂଦନ ରାଓଙ୍କୁ ଦେଖାଇବା କଥା ବିଶ୍ୱନାଥ କର ସ୍ୱୀକାର କରନ୍ତି (ଭ୍ରମଣ ବୃତ୍ତାନ୍ତ—ସ:ହି: ୭/୨୪) । ଏ କାବ୍ୟଟି ଅସମ୍ପୂର୍ଣ୍ଣ ରହିଲେ ମଧ୍ୟ ତା' ମଧ୍ୟରେ ଦିବଂଗତ ଶାଶ୍ୱତ କାବ୍ୟପ୍ରାଣର ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୁଏ ।

**କିଷ୍କିନ୍ଧ୍ୟା :**

ଦାକ୍ଷିଣାତ୍ୟ ଭ୍ରମଣ ସମୟରେ ପ୍ରତ୍ୟକ୍ଷ ଅନୁଭୂତିକୁ ନେଇ ଏ କାବ୍ୟ ରଚିତ । ଏ କାବ୍ୟ ଜଣେ ଦର୍ଶକ ଛଦ୍ମନାମରେ ସଂବଲପୁର ହିତୈଷିଣୀର ୨୬.୪.୧୮୯୩ ସଂଖ୍ୟାରେ ପ୍ରକାଶିତ ।

ଭ୍ରମଣ ସମୟରେ ସୂଢ଼ଳଦେବ ବଳୀ ରାଜାର ରାଜଧାନୀ, ଋଷ୍ୟମୁକ ପର୍ବତ, ପଂପା ସରୋବର ପ୍ରଭୃତି ପରିଦର୍ଶନ କରିଥିଲେ । ସେହି ଭ୍ରମଣଲବ୍ଧ ଅନୁଭୂତିକୁ କାବ୍ୟ ଦୁକୂଳ ପିନ୍ଧାଇଛନ୍ତି କବି । ସାବଲୀଳ ଶବ୍ଦଚୟନ, ସ୍ୱାଭାବିକ ପ୍ରକୃତିଚିତ୍ର, ପ୍ରାଣବାନ ଆଙ୍ଗିକ କବିତାଟିକୁ ରୁଚିଶୀଳ କରିଛି । ଚିତ୍ରୋତ୍ପଳାରେ ଶବ୍ଦାଡ଼ମ୍ବର ଓ ଅଳଙ୍କାରର ଆତିଶଯ୍ୟ ସମାଲୋଚିତ ହୋଇଥିଲା । ଏଣୁ ଏ କାବ୍ୟରେ ଅଳଙ୍କାରର ଅଯଥା ସମାବେଶ ଅନୁପସ୍ଥିତ । ଗୋଟିଏ ସରଳ ପ୍ରୟୋଗ ମାଧ୍ୟମରେ କାବ୍ୟୋତ୍କର୍ଷକୁ ପରୀକ୍ଷା କରାଯାଇପାରେ ।

"ମହାଗଣ୍ଡ ଶୈଳ ମଧ୍ୟରେ ତୁଙ୍ଗଭଦ୍ରା ବାହିନୀ
ବାହିତ ହେଉଛି ସତତ ଶିଳାସଙ୍ଗ ସ୍ପର୍ଦ୍ଧିନୀ ।
ନୀଳମଣି ପ୍ରାୟେ ନିର୍ମଳ ସୁଧାସମ ମଧୁର
ପାନ କରି ଦେଲା ଲୋକର ତୃଷା ହୁଅଇ ଦୂର ।

× × × ×

ତଟିନୀ ସଲୀଳ ଉପଳ ଅନ୍ତରାଳେ ଭ୍ରମୁଛି
ତରଙ୍ଗ କରରେ ରଞ୍ଜିତ-କରି ସଦା ମାଜୁଛି ।"

'ତୃଷା ହୁଅଇ ଦୂର'ର ଆରୋପ ରାଜାଧିରାଜ ବାସୁଦେବଙ୍କ ସାଧାରଣ ଜନୋଚିତ ଅନୁଭୂତିର ପ୍ରମାଣ ଦିଏ । ଏ ଦୃଷ୍ଟିଭଙ୍ଗୀ ହିଁ ରାଜାକୁ କବି କରିଛି । ଜନସାଧାରଣର ପ୍ରେମାସ୍ପଦ କରିଛି ।

## ଅନ୍ୟାନ୍ୟ କବିତା :

ସୂଢ଼ଳଦେବଙ୍କ କବିତା ମଧ୍ୟରେ ଜହ୍ନମାମୁଁ, ଜଣାଣ ଏବଂ ବସନ୍ତ ବର୍ଣ୍ଣନ ହିଁ ଲୋକଲୋଚନକୁ ଆସିଛି । ଜହ୍ନମାମୁଁ ଶୀର୍ଷକରେ ବାମଣ୍ଡାର କବିମାନଙ୍କଠାରୁ ସୂଢ଼ଳଦେବ କବିତା ଆହ୍ୱାନ କରିଥିଲେ । ବା'ର ଜଣ କବିଙ୍କର ଏକ ଶହ ଚାରି ପଦ ବିଶିଷ୍ଟ କବିତା ପୁସ୍ତକ ରୂପେ ଜଗନ୍ନାଥବଲ୍ଲଭ ପ୍ରେସ୍‌ରୁ ପ୍ରକାଶ ଲଭିଥିଲା । ଏ ପୁସ୍ତକର ପ୍ରଥମ ବାର ପଦ ସୂଢ଼ଳଦେବଙ୍କ ଦ୍ୱାରା ରଚିତ । ଏ କବିତାରେ କବିଙ୍କ କଳ୍ପନାବିଳାସ ପ୍ରତିଫଳିତ । ପ୍ରାଚୀନ କାବ୍ୟରୀତିର ଏହା ପ୍ରତିନିଧି । ଜହ୍ନମାମୁଁଙ୍କୁ କବିଦୃଷ୍ଟି ସରହାଣ୍ଡି, ଉପବନର ଫୁଲ, ସୁବର୍ଣ୍ଣ ପିଠା, ଆକାଶ ପଣାର ସାଚି ରୂପେ କଳ୍ପନା କରିଛି । ମନୋରଞ୍ଜନ ଧର୍ମୀ ଏ କବିତା କାବ୍ୟ-ସମସ୍ୟାପୂରଣର ନିଚ୍ଛକ ପ୍ରତିଛବି । ଯୌଥ କବିତା ରଚନାର ପରଂପରା ବାମଣ୍ଡାରୁ ୧୮୯୫ର ପାରିଜାତମାଳା ପୁସ୍ତକ ସହିତ ଆରମ୍ଭ ହୁଏ । ଏ ପରଂପରାକୁ ଏ ପୁସ୍ତକ ପରିପୁଷ୍ଟ କରିଛି ।

'ଜଣାଣ' କବିତା କବିଙ୍କର ଆଧ୍ୟାତ୍ମିକ ଦୃଷ୍ଟିର ପରିଚୟ ଦିଏ । ପରମପୁରୁଷ ନିକଟରେ ସମର୍ପଣ କରିଦେବାର ଭାବ ହିଁ କବିତାର ଧ୍ୟେୟ ।

'ବସନ୍ତ ବର୍ଣ୍ଣନ' କବିଙ୍କ ପ୍ରକୃତି ପ୍ରୀତିର ଅନନ୍ୟ ପ୍ରତିଫଳନ । ସରଳ ବୋଧଗମ୍ୟ ଭାଷାରେ ବସନ୍ତ ଋତୁର ଚିତ୍ର ପ୍ରଦତ୍ତ ।

## ବୈଦିକ ପ୍ରସ୍ତାବ ଓ ଅନ୍ୟାନ୍ୟ ରଚନା :

'ବୈଦିକ ପ୍ରସ୍ତାବ' କ୍ରମଶାଃକାରେ ଉତ୍କଳ ଦୀପିକା (୧୮୮୬-୮୭)ରେ ପ୍ରକାଶିତ । ଶ୍ରୀବାମଣ୍ଡା ଛଦ୍ମନାମରେ ରଚିତ ଉଲ୍ଲିଖିତ ରଚନା ସମୂହ ଯେ ବାସୁଦେବଙ୍କ ଦ୍ୱାରା ରଚିତ ଏହା ବିଭିନ୍ନ ସୂତ୍ରରୁ ପ୍ରମାଣିତ । (ପ୍ରାକ୍‌ସୂଚନା : ବୈଦିକ ପ୍ରସ୍ତାବ : ବାସୁଦେବ ଗ୍ରନ୍ଥାବଳୀ -୨୦୦୩)

ଶ୍ରୀବାମଣ୍ଡା ଛଦ୍ମନାମରେ ଉତ୍କଳ ଦୀପିକା, ସେବକ, ସଂସ୍କାରକ, ସମ୍ବଲପୁର ହିତୈଷିଣୀ ପ୍ରଭୃତି ପତ୍ର ପତ୍ରିକାରେ ଅନେକ ରଚନା ଦେଖାଯାଏ । ଶ୍ରୀବାମଣ୍ଡା ଯେ ବାସୁଦେବ ସୁଢ଼ଳଦେବ ଏକଥା ସମକାଳୀନ ଅନେକ ପତ୍ର ପ୍ରେରକଙ୍କ ରଚନାରୁ ସ୍ପଷ୍ଟ ହୁଏ । ବୈଦିକ ପ୍ରସ୍ତାବ ଉତ୍କଳ ଦୀପିକା ତା-୧୨.୭.୧୮୮୬ରୁ ଆରମ୍ଭ ହୁଏ । ଏହାର ଠିକ୍ ପରେ ପରେ ୭.୮.୧୮୮୬ ସଂସ୍କାରକ ପୃଷ୍ଠାରେ ଶ୍ରୀବାମଣ୍ଡା ସମ୍ବାଦବାହିକା (୧୫.୭.୧୮୮୬)ରେ ପ୍ରକାଶିତ ଅଳଙ୍କାର ବୋଧୋଦୟର ସମାଲୋଚନାର ସମାଲୋଚନା କରି କୁହନ୍ତି ''ଯେହେଉ ସମାଲୋଚକ ଯାହା ଆମ୍ଭପ୍ରତି ସଦୟହୋଇ ଦୁଃଖ ସ୍ୱୀକାର ପୂର୍ବକ ଆମ୍ଭର ପରିଶ୍ରମକୁ ସମାଲୋଚନା କଲେ ଏଥିରେ ତାଙ୍କୁ ଆମ୍ଭେ ଶତଶତ ଧନ୍ୟବାଦ ଦେଉଅଛୁଁ । ଇତି । ଶ୍ରୀବାମଣ୍ଡା'' । ଏଥିରୁ ଶ୍ରୀବାମଣ୍ଡା ଯେ ସ୍ୱୟଂ ସୁଢ଼ଳଦେବ ଏହା ପ୍ରମାଣିତ ।

ପ୍ରଥମ ପ୍ରସ୍ତାବରେ ଧର୍ମଶାସ୍ତ୍ରର ପ୍ରୟୋଜନୀୟତା ବେଦର ସ୍ୱରୂପ ବର୍ଣ୍ଣିତ ହୋଇଅଛି । ବାସୁଦେବ ଅପୌରୁଷେୟ ବେଦବାକ୍ୟ ବୋଲି ଘୋଷଣା କରନ୍ତି । ଦ୍ୱିତୀୟ ପ୍ରସ୍ତାବରେ ଋଗ୍ ବେଦର ବିଶ୍ଳେଷଣ କରି ଅପୌରୁଷେୟ ଅର୍ଥ ପୁରୁଷ ସଦୃଶୋଚ୍ଚାରିତ ବାକ୍ୟକୁ ବେଦ ବୋଲି ବର୍ଣ୍ଣନା କରାଯାଇଛି । ନିଶ୍ୱାସ ଯେପରି ଅଯତ୍ନସିଦ୍ଧ ବେଦ ଅଯତ୍ନସିଦ୍ଧ ଅର୍ଥାତ୍ ଈଶ୍ୱରଙ୍କ ବାଣୀ ସ୍ୱତଃସିଦ୍ଧ । ତୃତୀୟ ପ୍ରସ୍ତାବରେ ବେଦରେ ଥିବା ଉଦ୍ଦେଶ୍ୟମୂଳକ ବାକ୍ୟ ସମୂହକୁ ବାଦଦେଇ ବେଦର ମର୍ମ ବୁଝିଲେ ହିନ୍ଦୁଧର୍ମର ଉପାଦେୟତା ଜଣାପଡ଼େ ବର୍ଣ୍ଣିତ ହୋଇଛି । ଚତୁର୍ଥ ପ୍ରସ୍ତାବରେ ସମ୍ବଲପୁର ଖ୍ରୀଷ୍ଟ ଧର୍ମଯାଜକ ପି.ଇ. ହେବରଲେଟଙ୍କ ହିନ୍ଦୁ ଧର୍ମ ସଂପର୍କରେଥିବା ଭ୍ରାନ୍ତିର ଉନ୍ମୋଚନ କରାଯାଇଛି ।

ହେବରଲେଟ ଶ୍ରୀକୃଷ୍ଣଙ୍କ ବହୁ ସ୍ତ୍ରୀ-ହରଣ ପ୍ରସଙ୍ଗକୁ ସମାଲୋଚନା କରିଥିଲେ । ସେ ଅନେକଥର ବାମଣ୍ଡା ଆସି ଖ୍ରୀଷ୍ଟିଆନ୍ ଧର୍ମର ସାରବାଣୀ ପ୍ରଚାର କରିଛନ୍ତି । ଏପରିକି ସୁଢ଼ଳଦେବଙ୍କ ଆଗ୍ରହକ୍ରମେ ଧର୍ମତତ୍ତ୍ୱ ଉପରେ ପଣ୍ଡିତ ସଭାନେ ବକ୍ତୃତା ଦେଇଛନ୍ତି । ତାଙ୍କ ମତକୁ ସୁଢ଼ଳଦେବ ସବୁ ସମୟରେ ମାନି ନିଅନ୍ତି ନାହିଁ ବରଂ

ଆଲୋଚନା ପରେ ସତ୍ୟ ଉଦ୍‌ଘାଟିତ ହୁଏ । ହେବରଲେଟଙ୍କ ଶ୍ରୀକୃଷ୍ଣଙ୍କୁ ଲଂପଟ ଆଖ୍ୟା ପ୍ରଦାନରେ ବ୍ୟଥିତ ସୁଢ଼ଳଦେବ ଶ୍ରୀକୃଷ୍ଣଙ୍କ ମହନୀୟ ଚରିତ୍ରର ଉପସ୍ଥାପନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ବହୁସ୍ତ୍ରୀ ସଂଭୋଗ ଏକ ଅଳୀକ ବର୍ଣ୍ଣନ ମାତ୍ର । ସୁଢ଼ଳଦେବଙ୍କ ମତକୁ ପରିପୁଷ୍ଟ କରିବାପାଇଁ ତାଙ୍କର ଜ୍ୟେଷ୍ଠପୁତ୍ର ସଚ୍ଚିଦାନନ୍ଦ ଦେବ ରାସରହସ୍ୟ (୧୮୯୬) ପୁସ୍ତକ ରଚନା କରିଥିଲେ । ସୁଢ଼ଳଦେବଙ୍କ ମତର ଏହା ପରିବ୍ୟାପ୍ତ ପରିସର ସୃଷ୍ଟିକରିଥିଲା । ଯା' ଭିତରେ ଅନୁରଣିତ ହେଉଥିଲା ସୁଢ଼ଳଦେବଙ୍କ ସୂକ୍ଷ୍ମ ଯୁକ୍ତି । ହେବରଲେଟଙ୍କ ସହିତ ସୁଢ଼ଳଦେବଙ୍କ ଅନେକ ଥର ଆଳାପ ଆଲୋଚନା ହୋଇଛି । ଶ୍ରୀକୃଷ୍ଣଙ୍କ ଚରିତ୍ର ସମ୍ପର୍କରେ ସେ ଆକ୍ଷେପ କରିଥିବାରୁ ତାର ଶାସ୍ତ୍ରୀୟ ପ୍ରମାଣ ସହ ଉତ୍ତର ଚତୁର୍ଥ ପ୍ରସ୍ତାବରେ ଦିଆଯାଇଛି ।

ପଞ୍ଚମ ପ୍ରସ୍ତାବରେ ଜ୍ଞାନମାର୍ଗ ଓ କର୍ମ ମାର୍ଗର ସୂକ୍ଷ୍ମ ବିଶ୍ଳେଷଣ କରାଯାଇଛି । ଏହି ଦୁଇ ମାର୍ଗ ଈଶ୍ୱରୋପାସନାର ଏକ ଏକ ମାର୍ଗ । କର୍ମକୁ ତିନି ଭାଗରେ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଭାବରେ ବିଭକ୍ତ କରି ତାତ୍ପର୍ଯ୍ୟ ବର୍ଣ୍ଣିତ ହୋଇଛି । ଏହି କର୍ମ ସମୂହକୁ ନିମିତ୍ତ କରି ଲୋକେ ଈଶ୍ୱରୋପାସନାରେ ପ୍ରବୃତ୍ତ ହୁଅନ୍ତି । ଏହି ପ୍ରସ୍ତାବରେ ହିନ୍ଦୁଧର୍ମର ପ୍ରତିଟି ବାକ୍ୟକୁ ଉପଯୁକ୍ତ ଭାବେ ବୁଝିବାକୁ କୁହାଯାଇଛି ।

ଷଷ୍ଠ ପ୍ରସ୍ତାବରେ ନିତ୍ୟକ୍ରିୟାରେ ଈଶ୍ୱରୋପାସନା ସହିତ ସ୍ୱାସ୍ଥ୍ୟରକ୍ଷା ହୁଏ । ସନ୍ଧ୍ୟା ବନ୍ଦନାଦିରେ କରାଯାଉଥିବା ପ୍ରାଣାୟାମର ଉପଯୋଗିତା ବର୍ଣ୍ଣିତ ହୋଇଛି । ଦେହସ୍ଥ ପାଞ୍ଚ ପ୍ରକାର ବାୟୁ, ପ୍ରାଣ, ଆପାନ, ସମାନ, ଉଦାନ ଓ ବ୍ୟାନର ସ୍ୱରୂପ ଉଦ୍‌ଘାଟିତ ହୋଇଛି ।

ସପ୍ତମ ପ୍ରସ୍ତାବରେ ଅଦ୍ୱୈତମତ ସମ୍ପର୍କରେ ଆଲୋଚିତ ହୋଇଛି । ଧର୍ମ ତତ୍ତ୍ୱକୁ ଜାଣିମଧ୍ୟ ଯଥେଚ୍ଛାଚାରୀ ହେବା ଉଚିତ ନୁହେଁ । ଏହି ପ୍ରସ୍ତାବରେ ନବ୍ୟମତାବଲମ୍ବିମାନଙ୍କ କାମ କ୍ରୋଧଦ୍ୱାରା ବଶିଭୂତ ହେବା ଓ ଯଥେଚ୍ଛାଚାରି ହେବାକୁ ସମାଲୋଚନା କରାଯାଇଛି ।

ସପ୍ତମ ପ୍ରସ୍ତାବ ପରେ ଯଦିଓ ଅନ୍ୟ ପ୍ରସ୍ତାବ ଦୃଷ୍ଟିଗୋଚର ହୁଏନାହିଁ ତଥାପି ଏହି ପ୍ରସଙ୍ଗରେ ଅନେକ ରଚନା ଧର୍ମ ଧାରାକୁ ନେଇ ଦୀପିକା, ସଂସ୍କାରକ ପ୍ରଭୃତିରେ ପ୍ରକାଶ ପାଇଥିଲା । ବ୍ରାହ୍ମମାନେ ହିନ୍ଦୁକିନା ? (ଦୀପିକା-୨୧/୪୫) ପ୍ରବନ୍ଧରେ ସୁଢ଼ଳଦେବ ବ୍ରାହ୍ମଧର୍ମର ଅନେକ ଭ୍ରାନ୍ତି ପ୍ରଦର୍ଶନ କରିଛନ୍ତି । ଏହି ପ୍ରବନ୍ଧକୁ ଉପଲକ୍ଷ୍ୟ କରି ଏକ ବ୍ୟାପକ ଆଧାତ୍ମିକ ବିତର୍କ ସୃଷ୍ଟି ହୋଇଥିଲା । ସାମ୍ୟବାଦୀର ସମ୍ପାଦକ ଲଳିତମୋହନ ଚକ୍ରବର୍ତ୍ତୀ 'ନିବେଦନ' ଶୀର୍ଷକରେ ସୁଢ଼ଳଦେବଙ୍କ ବ୍ରାହ୍ମମାନେ ହିନ୍ଦୁକିନା ରଚନାର ପ୍ରତିବାଦ କରନ୍ତି । ଏହି ପ୍ରତିବାଦ ଦୀପିକାରୁ ସେବକ, ସଂସ୍କାରକ ଓ ନବସମ୍ବାଦ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ନିବେଦନ ପ୍ରାରମ୍ଭରେ ଲଳିତବାବୁଙ୍କର

ମନ୍ତବ୍ୟ ଉଲ୍ଲେଖଯୋଗ୍ୟ - ''××× ଉତ୍କଳ ଦୀପିକାର ବାମଣ୍ଡା ସ୍ତମ୍ଭରେ ବ୍ରାହ୍ମମାନଙ୍କୁ ଆକ୍ରମଣ କରି ଗୋଟିଏ ପ୍ରବନ୍ଧ ଲେଖା ହୋଇଅଛି । ଲୋକ ପରମ୍ପରା ଏପରି ଶ୍ରୁତ ହେଲୁଁକି ଏହିପତ୍ର ବାମଣ୍ଡାଧିପତି ଶ୍ରୀଯୁକ୍ତ ସୁଡ଼୍ଳଦେବଙ୍କ ଦ୍ୱାରା ଲିଖିତ ହୋଇଅଛି । ଯଦି ଏକଥା ଠିକ ହୁଏ ତେବେ ବଡ଼ ସୁଖର ବିଷୟ ।'' (ଦୀପିକା-୪.୧୨.୧୮୮୯) ଲଳିତ ମୋହନଙ୍କ ନିବେଦନ କ୍ରମାନ୍ୱୟରେ ଦୀପିକାର ପାଞ୍ଚଟି ସଂଖ୍ୟାରେ ଏବଂ ସଂସ୍କାରକରେ ଐତିହାସିକ ଓ ଶାସ୍ତ୍ରୀୟ ପ୍ରମାଣ ବେଦ ମନୁଷ୍ୟକୃତ ରଚିତ କି ନା ? 'ଶୀର୍ଷକରେ ନବସମ୍ବାଦ (୧/୨୧)ରେ ବୈଦିକ ପ୍ରମାଣ ପ୍ରଦାନ କରିଛନ୍ତି । ସେବକରେ ମଧ ତାଙ୍କର କେତୋଟି ପ୍ରତିବାଦ ପ୍ରବନ୍ଧ ପ୍ରକାଶିତ ।

ଏହି ସମସ୍ତ ପ୍ରତିବାଦକୁ ନିଜର ବହୁଶାସ୍ତ୍ରଦର୍ଶୀ ମନନଶୀଳ ଦୃଷ୍ଟିଭଙ୍ଗୀରେ ସୁଡ଼୍ଳଦେବ ଖଣ୍ଡନ କରିଛନ୍ତି । ଲଳିତବାବୁଙ୍କ ପ୍ରତିବାଦର ପ୍ରତିଟି ସ୍ତମ୍ଭର ଯଥାର୍ଥ ଉତ୍ତର ସୁଡ଼୍ଳଦେବ ଦୀପିକା ଓ ସଂସ୍କାରକ ପୃଷ୍ଠାରେ ପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ ଦୀପିକାରେ ବ୍ରାହ୍ମ ଧର୍ମ ପୁସ୍ତକରେ କୁଟିଳତାକୁ ସେ ସମାଲୋଚନା କରିଛନ୍ତି । ସଂସ୍କାରକ ପୃଷ୍ଠାରେ ଈଶ୍ୱର ସାକାର, ବ୍ରାହ୍ମୋପାସନା ପ୍ରୟୋଜନୀୟକିନା ପ୍ରଭୃତି ରଚନା ତାଙ୍କର ପ୍ରସାରିତ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରେ ।

ସୁଡ଼୍ଳଦେବଙ୍କ ମାନସିକତା ଧର୍ମନିରପେକ୍ଷତାର ପକ୍ଷପାତି । ବ୍ରାହ୍ମଧର୍ମର ଶ୍ରେଷ୍ଠ ପ୍ରବକ୍ତା ସମୂହଙ୍କ ସହିତ ତାଙ୍କର ଅନାବିଳ ସମ୍ପର୍କ ଥିଲା । ମଧୁସୂଦନ ରାଓ, ରାମକୃଷ୍ଣ ସାହୁ, ବିଶ୍ୱନାଥ କର, ନନ୍ଦଲାଲ ବନ୍ଦୋପାଧ୍ୟାୟ, ପ୍ରସନ୍ନ ଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ବିଜୟ ଚନ୍ଦ୍ର ମଜୁମଦାର ପ୍ରମୁଖଙ୍କ ସହିତ ସୁଡ଼୍ଳଦେବଙ୍କ ଆତ୍ମିକ ସମ୍ପର୍କ ସର୍ବଜନ ପ୍ରସିଦ୍ଧ । ଏ ସମସ୍ତ ମନିଷୀଗଣ ବିଭିନ୍ନ ସମୟରେ ବାମଣ୍ଡା ଦରବାର ତଥା ଆଲୋଚନା ସଭାକୁ ମଣ୍ଡିତ କରିଛନ୍ତି । କିନ୍ତୁ ଧର୍ମୀୟ ପରମ୍ପରାର କଥା ଉଠିଲା ବେଳେ ସୁଡ଼୍ଳଦେବ ବ୍ରାହ୍ମିକ ଦଳକୁ ସମାଲୋଚନା କରିଛନ୍ତି । ଅନ୍ୟ ପକ୍ଷରେ ବ୍ରାହ୍ମିକଙ୍କ ମୁଖପତ୍ର ନବସମ୍ବାଦକୁ ଆର୍ଥିକ ସହାୟତା ପ୍ରଦାନ କରିଛନ୍ତି । ସୁଡ଼୍ଳଦେବଙ୍କ ରଚନାର ତୀବ୍ର ପ୍ରତିବାଦ କର୍ତ୍ତା ଲଳିତ ଚକ୍ରବର୍ତ୍ତୀଙ୍କ ବ୍ରାହ୍ମମତାବଲମ୍ବୀ 'ସାମ୍ୟବାଦୀ' ପତ୍ରିକାକୁ ମଧ ସୁଡ଼୍ଳଦେବ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିବାର ଶୁଣାଯାଏ ।

ଧର୍ମୀୟ କୁସଂସ୍କାର ବିରୁଦ୍ଧରେ ସୁଡ଼୍ଳଦେବ ଚିରଦିନ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ସ୍ୱରର ତୀବ୍ରତା ସମକାଳୀନ ସାରସ୍ୱତ ସେବକମାନଙ୍କୁ ଆକ୍ରାନ୍ତ କରିଥିଲା, ବ୍ୟସ୍ତ ବିବ୍ରତ କରି ତୋଳିଥିଲା । ସୁଡ଼୍ଳଦେବଙ୍କ ରଚନା ଅନେକ ସାହିତ୍ୟିକଙ୍କ ଅବଚେତନକୁ କବଳିତ କରିଥିଲା । ଯେକୌଣସି ପ୍ରତିବାଦାତ୍ମକ ପ୍ରବନ୍ଧକୁ ଅଧ୍ୟୟନ କଲେ ଲଳିତମୋହନ ଚକ୍ରବର୍ତ୍ତୀ ପ୍ରମୁଖ ସୁଡ଼୍ଳଦେବଙ୍କ ପ୍ରଭାବ ଅନୁଭୂତ କରନ୍ତି । ସଂସ୍କାରକ (୪/୧୪) ସମ୍ପାଦକୀୟ ଟୀପ୍ପଣୀରେ ଏହାର ପ୍ରମାଣ ମିଳିଥାଏ ।

''ଶ୍ରୀ ଲଳିତମୋହନ ଚକ୍ରବର୍ତ୍ତୀ ସର୍ବଦା ଶ୍ରୀ ବାମଣ୍ଡାଙ୍କ ପ୍ରବନ୍ଧକୁ ସ୍ୱପ୍ନ ଦେଖି ଦେଖି ବାମଣ୍ଡାଧିପତିଙ୍କ ରଚିତ ପ୍ରବନ୍ଧ ବୋଲି ବିଳବିଳେଇ ଉଠି କେତେକ ଗୁଡ଼ିଏ ଭାଗବତାଦିର ସଗୁଣ ସ୍ତୁତିପର ଶ୍ଳୋକ ଦୃଷ୍ଟାନ୍ତ ଦେଇ ସଂସ୍କାରକରେ ଗୋଟିଏ ପ୍ରବନ୍ଧ ଲେଖିଅଛନ୍ତି । ×××''। ଏହି ସମୟରେ ''ଦୟାମୟ ଈଶ୍ୱର'' ପ୍ରୟୋଗ ଉପରେ ଏକ ବିତର୍କ ସୃଷ୍ଟି ହୋଇଥିଲା । ଏହାର ସୃଷ୍ଟି କର୍ତ୍ତା ରୂପେ ସୁଢ଼ଳଦେବ ପ୍ରତିପାଦିତ ହୁଅନ୍ତି । (ସଂସ୍କାରକ-୪/୧୧) ।

ବ୍ରାହ୍ମଧର୍ମ ସମ୍ପର୍କରେ ସୁଢ଼ଳଦେବଙ୍କ ପରିଚ୍ଛନ୍ନ ଦୃଷ୍ଟିଭଙ୍ଗୀ ନନ୍ଦଲାଲ ବନ୍ଦୋପାଧ୍ୟାୟଙ୍କ ସହିତ କଥୋପକଥନରୁ ସ୍ପଷ୍ଟ ହୁଏ ।

ସୁଢ଼ଳଦେବଙ୍କ ସୂକ୍ଷ୍ମ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀର ପରିଚୟ ଉଲ୍ଲିଖିତ ରଚନା ସମୂହରୁ ପ୍ରମାଣିତ ହୁଏ । ଏତଦ୍‌ବ୍ୟତୀତ ଫକୀରମୋହନଙ୍କ 'ଭଗବତ୍ ଗୀତାର ସମାଲୋଚନା' ଦୀପିକା (୨୨/୧୯)ରେ ପ୍ରକାଶିତ ।

ସମ୍ବଲପୁର ହିତୈଷିଣୀରେ ମଧ୍ୟ ଅନେକ ରଚନା ଶ୍ରୀବାମଣ୍ଡା ଛଦ୍ମନାମରେ ପତ୍ରସ୍ଥ । ସୁଢ଼ଳଦେବଙ୍କ ଶବ୍ଦଗୁଣ, ଶବ୍ଦଦୋଷ, ଶବ୍ଦାଳଙ୍କାର ଓ ଚନ୍ଦ୍ରଭାଗାର ସମାଲୋଚନା ପ୍ରଭୃତି ରଚନା ହିତୈଷିଣୀରେ ପ୍ରକାଶିତ । ପ୍ରଥମ ତିନୋଟି ରଚନା ଅଳଙ୍କାର ବୋଧୋଦୟରେ ପ୍ରଦତ୍ତ ବିଷଦ୍ ବର୍ଣ୍ଣନାର ସଂକ୍ଷିପ୍ତରୂପ । ବହୁଳ ପ୍ରସାର କଳ୍ପେ ଏଗୁଡ଼ିକ ହିତୈଷିଣୀରେ ପ୍ରକାଶ କରାଯାଇଛି ଏବଂ ଶବ୍ଦାଳଙ୍କାରର ସବିଶେଷ ଜ୍ଞାନ ପାଇଁ ଅଳଙ୍କାର ବୋଧୋଦୟ ପୁସ୍ତକ ଅଧ୍ୟୟନ ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଏ ସମସ୍ତ ପ୍ରକାଶ କରିବାର ଉଦ୍ଦେଶ୍ୟ ଲେଖକୀୟ ପୌଢ଼ୀ ପ୍ରଦର୍ଶନ ନୁହେଁ । ବରଂ କଠିନ ବ୍ୟାକରଣ ଶାସ୍ତ୍ରକୁ ସରଳୀକୃତଭାବେ ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ।

ଦୀପିକାରେ ପ୍ରକାଶିତ ଚନ୍ଦ୍ରଭାଗା ସମସ୍ୟାରେ ପ୍ରଦତ୍ତ ''ଅନୁରାଗ ମନେ ଉପୁଜେ ଯେଉଁ କୁସୁମବାଣେ / ଉଲଟା ଯୋଖିଲେ ସେ ବାଣ ପୁଣି ବିରାଗ ଆଣେ'' ରେ କବି କେଉଁ କୁସୁମ ପ୍ରତି ନିର୍ଦ୍ଦେଶ କରିଛନ୍ତି ? ସୁଢ଼ଳଦେବଙ୍କ ଏ ସମସ୍ୟା ତାଙ୍କର ସାରସ୍ୱତ କୃତିତ୍ୱର ପରିଚୟ ପ୍ରଦାନ କରେ । ''ଚନ୍ଦ୍ରଭାଗାର ଉତ୍ତର'' ଶୀର୍ଷକରେ କିଛି ଉତ୍ତର ଦାତାଙ୍କ ଉତ୍ତରର ବିଶ୍ଳେଷଣ ସହିତ ସୁଢ଼ଳଦେବ ଯୁକ୍ତିପୂର୍ଣ୍ଣ ସମାଧାନ ପ୍ରଦାନ କରିଛନ୍ତି । ସମ୍ବଲପୁର ହିତୈଷିଣୀରେ-ପ୍ରକାଶିତ ''ଚନ୍ଦ୍ରଭାଗାର ସମାଲୋଚନା'' ଆଳଙ୍କାରିକ ଦୃଷ୍ଟି କୋଣରୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବୈଜ୍ଞାନିକ ସମାଲୋଚନାର ଭିତ୍ତିସ୍ଥାପନରେ ଚନ୍ଦ୍ରଭାଗାର ସମାଲୋଚନା ଓ ଫକୀରମୋହନଙ୍କ ଭଗବତ ଗୀତାର ସମାଲୋଚନା ସଫଳ ହୋଇଛି ।

ସୁଢ଼ଳଦେବ ସାହିତ୍ୟିକର ଯଶୋଲିପ୍ସା ନେଇ ଲେଖନୀ ଧାରଣ କରିନଥିଲେ ବରଂଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବା ଥିଲା ତାଙ୍କର ପରମ ଲକ୍ଷ୍ୟ । ଅଜସ୍ର

ପୁସ୍ତକର ପ୍ରକାଶକ ସୁଢ଼ଳଦେବ ନିଜର ଜୀବିତାବସ୍ଥାରେ ନିଜର ରଚନା ସମଗ୍ରଟିଏ ପ୍ରକାଶ କରିପାରିନାହାନ୍ତି । ଛଦ୍ମନାମରେ ପ୍ରକାଶିତ ରଚନା ସମୂହ ନିଜର ବୋଲି ବିଜ୍ଞାପିତ କରିବାର ଆଶାପୋଷଣ କରିନାହାନ୍ତି । ନିଜ ରଚନା ପ୍ରକାଶ କରିବାରେ ସେ ସର୍ବଦା ପରାଙ୍‌ମୁଖ । ନିଜ ମତବାଦକୁ ଜଣେ ନୃପତିର ପରାକ୍ରମରେ ପ୍ରଚାର କରିବା ଅପେକ୍ଷା ଜଣେ ସୁଜନକର୍ମୀ ରୂପେ ପ୍ରଚାର କରିବାକୁ ଚାହୁଁଥିଲେ । ଛଦ୍ମନାମରେ ରଚିତ ଲେଖା ମାଧ୍ୟମରେ ସେ ନିରପେକ୍ଷ ସୃଜନାତ୍ମକ ପ୍ରତିକ୍ରିୟାକୁ ଲକ୍ଷ୍ୟ କରିଥିଲେ । ଏହି ଦୃଷ୍ଟିରୁ ଶ୍ରୀ ବାମଣ୍ଡା ଛଦ୍ମନାମ ଯଥାର୍ଥ ମନେ ହୁଏ ।

ବୈଦିକ ପ୍ରସ୍ତାବ ସମୂହରେ ବେଦର ସ୍ୱରୂପ ବିଶ୍ଳେଷଣ ସହିତ ବ୍ରାହ୍ମଧର୍ମର କୁଟୀଳାର୍ଥକୁ ସମାଲୋଚନା କରାଯାଇଛି । ଏହି ପ୍ରସଙ୍ଗ ଏକ ତୀବ୍ର ବିତର୍କ ସୃଷ୍ଟି କରିଥିଲା । ଅନେକ ଅଜ୍ଞାତନାମା ପତ୍ର ପ୍ରେରକଙ୍କ ସହିତ ନୀଳମଣି ବିଦ୍ୟାରତ୍ନ, ରାମଭଦ୍ର ସାହନିନା ଦେବ ପ୍ରଭୃତି ସୁଢ଼ଳଦେବଙ୍କ ମତକୁ ସମର୍ଥନ କରି ଦୀପିକା, ସଂସ୍କାରକ ପ୍ରଭୃତିରେ ପତ୍ରମାନ ପ୍ରକାଶ କରିଥିଲେ । ଫଳରେ ଏ ବିବାଦ ଦୀପିକାର ବାମଣ୍ଡାସ୍ତମ୍ଭରୁ ସୃଷ୍ଟି ହୋଇ ସେବକ, ସଂସ୍କାରକ ଓ ନବସମ୍ବାଦ ପ୍ରଭୃତି ସମକାଳୀନ ପତ୍ର ପତ୍ରିକାକୁ ପ୍ରସାରିତ ହୋଇଥିଲା । ବିଜୁଳି ଇନ୍ଦ୍ରଧନୁ ସାରସ୍ୱତ କଳହ ପୂର୍ବରୁ ଆଧ୍ୟାତ୍ମିକ କଳହ ବେଶ୍ ପାଠକୀୟ ସଂବେଦନା ଆକର୍ଷଣ କରିଥିଲା । ସୁଢ଼ଳଦେବ କାୟମନୋବାକ୍ୟରେ ଜଣେ ସଂସ୍କାରକ । ଧର୍ମ କ୍ଷେତ୍ରରେ ଥିବା କୁସଂସ୍କାର ଦୂରୀକରଣ ଦିଗରେ ବୈଦିକ ପ୍ରସ୍ତାବ ଏକ ବଳିଷ୍ଠ ପଦକ୍ଷେପ ।

**ସମ୍ମାନ ପ୍ରାପ୍ତି :** ଉତ୍କଳର ଅନ୍ୟତମ ବିଶିଷ୍ଟ ସମ୍ମାନିତ ବ୍ୟକ୍ତି ଥିଲେ ସୁଢ଼ଳଦେବ । ଦେଶବିଦେଶରେ ତାଙ୍କ ଖ୍ୟାତି ପ୍ରଚାରିତ ହୋଇଥିଲା । ୧୯୦୧ରେ ସୁଢ଼ଳଦେବଙ୍କ ପ୍ରତିମୂର୍ତ୍ତି ଲଣ୍ଡନର ଅଲବର୍ଟ ଟଫ୍‌ଙ୍କ ଦ୍ୱାରା ତିଆରି ହୋଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସୁଢ଼ଳଦେବଙ୍କ ମହନୀୟ ପ୍ରତିଭା ଓ ବ୍ୟକ୍ତିତ୍ୱ ଦେଶ ବାହାରେ ମଧ୍ୟ ପ୍ରତିଷ୍ଠା ଅର୍ଜନ କରିଥିଲା ।

There has recently been privately exhibited in London a Marble statue of Rajah Sir Sudhal Dev K.C.I.E. Chief of Bamrah in the C.P. It is the work of Mr. Albert Toft who is one of the foremost of our rising Sculptors. The statue is life-size and represents the Rajah seated in a chair and wearing a chapkan and turban. He also has upon his breast the star of India and the insignia of the Indian Empire. He is represented in a striking attitude and the entire execution of the work has been carried out in a most admirable and effective manner. I am informed that it has been the universal approval of those who have seen it, and on showing

a photograph of it to some of my Indian friends, they expressed the opinion that it was one of the best creations of an Indian subject, they had ever seen. The statue I may add is made of the finest carrara marble, which is beautifully pure and free from stain or suggestion of colour. It is now on its way to India, where it will certainly win the admiration of all who see it.

When the time come for setting the contents of the Victoria Memorial in Calcutta, and giving out the orders for statue of which there will probably well to consider the work of Mr. Toft who has shown by his statue of the Rajah of Bamrah what he can do in this direction. Mr. Toft is pretty certain to come to the front rank in his profession. He has already executed statues of the late Queen, Mrs. Gladstone, Mr. Henery Richard and other celebretics. The current number of Magazine of Art contains a very appreciative article of his work accompanied by some excellent reproductions thereof the most striking of which are "Hagar" "Fatlad" the Right Hon'ble W.E. Gladstone and the Spirit of Melancholy. [From the Indian Mirror's London correspondent;]

ଓଡ଼ିଶାର ନବୀନରୁ ପ୍ରବୀଣ ପ୍ରତିଟି ସାହିତ୍ୟିକ ନିଜର ସାରସ୍ୱତ କୃତିରେ ସୁଢ଼ଳଦେବଙ୍କୁ ଉଚ୍ଚ ସମ୍ମାନ ଜଣାଇଥିଲେ । ସେ ଥିଲେ ପ୍ରାଚୀନ ଓ ଆଧୁନିକ ସାହିତ୍ୟର ସଂଯୋଗ ସେତୁ, ପ୍ରାଚ୍ୟ ଓ ପାଶ୍ଚତ୍ୟ ସଂସ୍କୃତିର ମିଳନଭୂମି ଓ ମୋଗଲବନ୍ଦୀ ଛତିଶଗଡ଼ ମିଳନର ନିୟାମକ ।

ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ସମ୍ମାନ ଜଣାନ୍ତି -

''ହେ ସୁଢ଼ଳ ମହାରାଜା କରେଁ ନମସ୍କାର
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର ।
ମୁଗଲବନ୍ଦି ଛତିଶଗଡ଼ ବହୁଉ ଅନ୍ତର
ଦୁହିଙ୍କୁ ମିଳାଇ ଦେଇଅଛ ପରସ୍ପର ।
ବାମଡ଼ା ରାଜ୍ୟରେ କରୁଅଛ ରାଜପଣ
ମାତ୍ର ଜ୍ଞାନ ରାଜ୍ୟେ ଅଟ ନୃପତି ଆପଣ ।''

କବି ରାଧାନାଥ ତାଙ୍କର ପ୍ରତିଟି କାର୍ବ୍ୟରେ ସୁଢ଼ଳଦେବଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ଚିଲିକାରେ ଓଡ଼ିଶାର ଅଜ୍ଞାନ କାଳିମା ଦୂରିଭୂତ କରିବା ପାଇଁ କାବ୍ୟତାରା ରୂପେ ଉଦିତ ହୋଇଥିବାର ପ୍ରକାଶ କରିଛନ୍ତି । ମହାନ୍ କାବ୍ୟ ମହାଯାତ୍ରାର ଷଷ୍ଠ ସର୍ଗ ପ୍ରାରମ୍ଭରେ ସୁଢ଼ଳଦେବଙ୍କୁ ସ୍ୱାଗତ କରିଛନ୍ତି ରାଧାନାଥ -

''ଦିବ୍ୟ ଅବଧାନେ ଆମ୍ଭ ଏ ଗୀତ ତୁମ୍ଭର,
ହେ ରାଜେନ୍ଦ୍ର, ମନ୍ଦ୍ରନାଦି ପ୍ରପାତର ପତି,
ବାମଣ୍ଡା ମଣ୍ଡଳେଶ୍ୱର, ଉତ୍କଳ ମଣ୍ଡନ;
ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ,
ଦେବଦ୍ରୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ ।''

କବିଶେଖର ଚିନ୍ତାମଣି ମହାନ୍ତି 'ଉତ୍କଳ କମଳା' କାବ୍ୟରେ 'ଉତ୍କଳ ବାଣୀ କମଳା ମିଳନ ମନ୍ଦିର' ରୂପେ ସମ୍ମାନ ଜଣାଇଛନ୍ତି । ସୁଢ଼ଳଦେବଙ୍କ ଅବର୍ତ୍ତମାନରେ ଉତ୍କଳ ଭୂମିର ଦକ୍ଷହସ୍ତ ଛିଣ୍ଡିଯିବାର ଦୁଃଖ ପ୍ରକାଶ କରନ୍ତି ।

ଭକ୍ତକବି ମଧୁସୂଦନ ରାଓ 'ଶୋକଲହରୀ' କବିତାରେ ଭାଷା ଯୋଗେ ଉତ୍କଳ ମିଳନର ପୁରୋଧା ରୂପେ ସୁଢ଼ଳଦେବଙ୍କୁ ସମ୍ମାନ ପ୍ରଦାନ କରନ୍ତି । ଗଙ୍ଗାଧର ମେହେର ସୁଢ଼ଳଦେବଙ୍କୁ ଶାପଭ୍ରଷ୍ଟ ଦେବତା ରୂପେ ତୁଳନା କରିଛନ୍ତି ।

ସୁଢ଼ଳଦେବଙ୍କୁ ପ୍ରଶଂସା କରି ରାମକୃଷ୍ଣ ସାହୁ 'ଭାରତାଦର୍ଶ' ରଚନା କରିଥିଲେ । ଏଥିରେ ସୁଢ଼ଳଦେବଙ୍କୁ ଭାରତର ଜଣେ ଆଦର୍ଶ ପ୍ରଜାପାଳକ ଓ ଅଦ୍ୱିତୀୟ ପ୍ରତିଭା ରୂପେ ବର୍ଣ୍ଣନା କରାଯାଇଛି । ଅଯଥା ଆତ୍ମ ପ୍ରଶଂସାର ପକ୍ଷପାତି ନଥିଲେ ସୁଢ଼ଳଦେବ । ସମ୍ବଲପୁର ହିତୈଷିଣୀ (୧୧/୧୫) ୧୩.୯.୧୮୯୯ ସଂଖ୍ୟାରେ 'ଭାରତ ଦର୍ଶ ସମ୍ବନ୍ଧେ ଅଭିମତ' ପ୍ରକାଶପାଏ । ଏଥିରେ ସୁଢ଼ଳଦେବ କୁହନ୍ତି ''ଶ୍ରୀଯୁକ୍ତ ରାମକୃଷ୍ଣ ସାହୁଙ୍କ ପ୍ରଣୀତ ଭାରତାଦର୍ଶ ଦେଖି ଆମ୍ଭେ ଅତ୍ୟନ୍ତ ଦୁଃଖିତ ହୋଇଅଛୁ ।'' ଉତ୍କଳ ଦୀପିକା (୩୪/୩୯) ୩୦.୯.୧୮୯୯ ସଂଖ୍ୟାରେ ଭାରତାଦର୍ଶର ସମୀକ୍ଷା ଆଳରେ ରାମକୃଷ୍ଣଙ୍କ କାର୍ଯ୍ୟର ପ୍ରଶଂସା କରାଯାଇଛି । ଜଣେ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ଗୁଣ କୀର୍ତ୍ତନ ସର୍ବାଦୌ କର୍ତ୍ତବ୍ୟ । ନିଜର ଶ୍ଳାଘାବାଣୀ ଶୁଣିବାରେ ମହାମନୀଷୀଗଣ କୁଣ୍ଠିତ ହୁଅନ୍ତି । ସେହିପରି ରାମକୃଷ୍ଣଙ୍କ ପୁସ୍ତକ ଉପରେ ସୁଢ଼ଳଦେବ ଦୁଃଖିତ ହୋଇଥିଲେ ମଧ୍ୟ ସୁଢ଼ଳ ଗୁଣକୀର୍ତ୍ତନ ଯଥାର୍ଥ ହୋଇଛି । ଏହି ପ୍ରସଙ୍ଗରୁ ସୁଢ଼ଳଦେବଙ୍କ ମହନୀୟ ପ୍ରତିଭାର ପରିଚୟ ମିଳେ ।

ଓଡ଼ିଶାର ଏହି ବିସ୍ମୟ ପ୍ରତିଭା ନଭେମ୍ବର-୧୯, ୧୯୦୩ରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କର ତିରୋଧାନରେ ସ୍ତମ୍ଭିଭୂତ ହୋଇଯାଇଥିଲା ସମଗ୍ର ଉତ୍କଳ । ସାରସ୍ୱତ ଗଗନରେ ଛାଇ ଯାଇଥିଲା କରାଳ ଦୁଃଖର ବାଦଲ । ସମସ୍ତ କବି, ସାହିତ୍ୟିକ, ସମସ୍ତ ପତ୍ରପତ୍ରିକା ଏହି ଯୁଗପୁରୁଷଙ୍କ ମହାପ୍ରୟାଣରେ କାତର ହୋଇ ଉଠିଥିଲେ । କଲିକତାର ଅଭିଜ୍ଞ ଚିକିତ୍ସକ ଆର୍.ଏଲ. ଦତ୍ତଙ୍କର ସମସ୍ତ ପ୍ରଚେଷ୍ଟା ହାର ମାନିଥିଲା । ବହୁମୂତ୍ର ରୋଗରେ ଦିନଦ୍ୱିପ୍ରହରେ ସୁଢ଼ଳଦେବ ଇହଧାମ ତ୍ୟାଗ କଲେ । ତନୁତ୍ୟାଗ ପୂର୍ବରୁ ଜ୍ୟେଷ୍ଠ ପୁତ୍ର ସଚ୍ଚିଦାନନ୍ଦଙ୍କୁ ରାଜ୍ୟ ଶାସନ ସଂପର୍କରେ ଆବଶ୍ୟକୀୟ ଉପଦେଶ ପ୍ରଦାନ କରିଥିଲେ ।

ସୁଢ଼ଳଦେବଙ୍କ ତିରୋଧାନରେ ରାଧାନାଥ, ମଧୁସୂଦନ, ଫକୀର ମୋହନ, ବିଶ୍ୱନାଥ, ଗୌରୀଶଙ୍କର, ଗଙ୍ଗାଧର ପ୍ରମୁଖ ସ୍ତୁତିଚାରଣ କରି ନିଜ ନିଜର ସାରସ୍ୱତ ଶୋକ ପ୍ରକାଶ କରିଥିଲେ । ଏ ପ୍ରସଙ୍ଗରେ ଦୀପିକାରେ ପ୍ରକାଶିତ ଶୋକପ୍ରକାଶ ପାଠକଙ୍କ ଅବ ଗତି ପାଇଁ ଉଦ୍ଧୃତ କରାଗଲା ।

**ସୁଢ଼ଳଦେବଙ୍କ ତିରୋଧାନରେ 'ଉତ୍କଳଦୀପିକା'ର ଶୋକ ପ୍ରକାଶ–**

''ଆମ୍ଭେମାନେ ଗଭୀର ଦୁଃଖର ସହିତ ଉତ୍କଳ ଜାତିର ଆଉ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର- ବର୍ତ୍ତମାନ ସମୟର ସର୍ବୋଚ୍ଚ ନକ୍ଷତ୍ର-ଅସ୍ତ ହେବାର ପ୍ରକାଶ କରୁଅଛୁଁ ।

ବାମଣ୍ଡାଧିପତି ରାଜା ସର୍ ସୁଢ଼ଳଦେବ କେ.ସି.ଆଇ.ଇ. ଗତ ଗୁରୁବାର ପୂର୍ବାହ୍ନ ଘ ୧୧ ଣ୍ଟା ବେଳେ ସ୍ୱର୍ଗାରୋହଣ କଲେ । ଏହି ହୃଦୟବିଦାରକ ସମ୍ବାଦ ଗତକାଲି ବାମଣ୍ଡାର ପ୍ରାଇଭେଟ୍ ସେକ୍ରେଟାରୀଙ୍କର ତାର ସମ୍ବାଦରୁ ଅବଗତ ହେଲୁଁ । ଏଥିପୂର୍ବେ ରାଜାଙ୍କର ସ୍ୱାସ୍ଥ୍ୟ ଘଟିତ ସମ୍ବାଦ କିଛି ଜଣାନଥିଲା ଏବଂ ଏ ଦୁର୍ଘଟନାର ବିସ୍ତାରିତ ବିବରଣ କିଛି ଏ ପର୍ଯ୍ୟନ୍ତ ଅବଗତ ହୋଇନାହୁଁ । ବାମଣ୍ଡା ରାଜାଙ୍କର କୀର୍ତ୍ତି ଏକ ଉତ୍କଳ ଭୂମି କାହିଁକି ସମସ୍ତ ଭାରତରେ ବିଖ୍ୟାତ । ସେ ଅସାଧାରଣ ବୁଦ୍ଧି ଓ ପ୍ରତିଭା ବଳରେ ସ୍ୱରାଜ୍ୟ ଶାସନ, ତହିଁର ଅଶେଷ ଉନ୍ନତି ସାଧନ ଏବଂ ବାଣିଜ୍ୟ ବ୍ୟବସାୟରେ ଯେପରି ସଫଳତା ଲାଭ କରିଥିଲେ ଉତ୍କଳ ରାଜମଣ୍ଡଳରେ ତାହା ବିରଳ ଅଟେ । ସେ ସମସ୍ତ ଉପାୟ ଏବଂ ଧର୍ମ ବଳରେ ଯେମନ୍ତ ଏକ ଦିଗରୁ ଅତୁଳ ସମ୍ପତ୍ତି ଏବଂ ବହୁ ପୁତ୍ର କନ୍ୟାଦି ବୃହତ୍ ପରିବାରର କର୍ତ୍ତା ହୋଇଥିଲେ ତେମନ୍ତ ଅନ୍ୟ ଦିଗରେ ବହୁବିଧ ଦାନ, ଦୀନ ପ୍ରତିପାଳନ, ଗୁଣିଜନର ଉତ୍ସାହ ଓ ସାହାଯ୍ୟ ଇତ୍ୟାଦି ଦ୍ୱାରା ଅନେକ ଲୋକର ଆଶ୍ରୟର ସ୍ଥଳ ହୋଇଥିଲେ । ଏହାଙ୍କର ବୟସ ୬୦/୬୨ ବର୍ଷରୁ ଅଧିକ ନ ଥିଲା । ଏମନ୍ତ ମହତ୍ ବ୍ୟକ୍ତିର ବିରହରେ କାହାର ମନ ଥୟ ଧରିବ ? ଈଶ୍ୱରଙ୍କର ଯାହା ଇଚ୍ଛା ତାହା ଘଟନା ହେଲା । ଈଶ୍ୱର ତାହାଙ୍କର ଆତ୍ମା ଏବଂ ପରିବାରବର୍ଗର ସାନ୍ତ୍ୱନା ବିଧାନ କରନ୍ତୁ ଏବଂ ତାହାଙ୍କର ଯୋଗ୍ୟ ଜ୍ୟେଷ୍ଠପୁତ୍ର ଯେ କି ଏତେବେଳେ ଗାଦି ପ୍ରାପ୍ତ ହୋଇଥିବେ ତାହାଙ୍କୁ ସ୍ୱର୍ଗୀୟ ପିତାଙ୍କର ଯଶୋରକ୍ଷା ଓ ବୃଦ୍ଧି ବିଷୟରେ ସମର୍ଥ କରନ୍ତୁ । (ଉତ୍କଳ ଦୀପିକା-୨୧.୧୧.୧୯୦୩)''

''ବାମଣ୍ଡାଧିପତି ସ୍ୱର୍ଗୀୟ ସୁଢ଼ଳଦେବଙ୍କ ବୟସ ବ୬୦/୬୨ର୍ଷ ଥିବାରୁ ଆମ୍ଭେମାନେ ଭ୍ରମରେ ଗତ ସପ୍ତାହରେ ଲେଖିଥିଲୁଁ । ବର୍ତ୍ତମାନ ସମ୍ବଲପୁର ହିତୈଷିଣୀରୁ ଅବଗତ ହେଲୁଁ ଯେ ତାହାଙ୍କର ବୟସ ବ ୫୩/୬ ମାସ ହୋଇଥିଲା । ତାହାଙ୍କର ପୀଡ଼ା ସମ୍ବନ୍ଧରେ ସହଯୋଗୀ ଲେଖିଅଛନ୍ତି କି ମହାରାଜା ବହୁଦିନରୁ ବହୁମୂତ୍ର ରୋଗରେ ପୀଡ଼ିତ ଥିଲେ । ମଧ୍ୟରେ କେତେକ ମାସ ଭଲ ଥିଲେ, ମାତ୍ର

ମା ୩/୪ସ ହେଲା ସେହି ରୋଗ ପୁନର୍ବାର ଆକ୍ରମଣ କଲା ଏବଂ ଅନେକ ସାବଧାନତା ସହିତ ନାନା ପ୍ରକାର ଚିକିତ୍ସା ହେଉଥିଲେ ମଧ କ୍ରମଶଃ ବୃଦ୍ଧି ଦିଗକୁ ଚାଲିଲା ଏବଂ ଶରୀର ଦୁର୍ବଳ କରିପକାଉଥିଲା । ପରିଶେଷରେ ଏକଦିନ ଅଜ୍ଞାନାବସ୍ଥାରେ ରହି ପ୍ରାଣତ୍ୟାଗ କଲେ । ତାହାଙ୍କ ଚିକିତ୍ସା ନିମନ୍ତେ କଲିକତାର ପ୍ରସିଦ୍ଧ ଗବର୍ଣ୍ଣମେଣ୍ଟ ପେନ୍‌ସନ୍ ପ୍ରାପ୍ତ ଡ଼ାକ୍ତର କର୍ଣ୍ଣେଲ୍ ଆର୍.ଏଲ. ଦତ୍ତଙ୍କୁ ଅଣାଯାଇଥିଲା । ମାତ୍ର ନିଦାନ କାଳରେ କିଏ ରକ୍ଷା କରିବ ? ମହାରାଜାଙ୍କର ଅଳ୍ପ ବୟସରେ ମୃତ୍ୟୁ ଅଧିକ ଦୁଃଖ ଏବଂ ଓଡ଼ିଶାର ଅଧିକ ଦୁର୍ଭାଗ୍ୟର କଥା ଅଟେ । ଆଗାମୀ ମାସରେ ଏଠାରେ ଯେଉଁ ଜାତୀୟ ସମିତି ହେବାର ଆୟୋଜନ ହେଉଅଛି ତହିଁର ସଭାପତି ହେବା କାରଣ ତାହାଙ୍କୁ ତାର ସମ୍ବାଦ ଦ୍ୱାରା ଅନୁରୋଧ କରାଯାଇଥିଲା । ମାତ୍ର ତହିଁର ଉତ୍ତରରେ ତାହାଙ୍କ ମୃତ୍ୟୁ ସମାଚାର ଆସି ପହଞ୍ଚିଲା । ଏଥିରୁ ବଳି ଦୁଃଖର କଥା ଅଛି କି ?'' (ଉ:ଦୀ-୨୮.୧୧.୧୯୦୩)

ବାମଣ୍ଡା ପ୍ରଜାଙ୍କର ସେ ଥିଲେ ଆଦରର ଧନ । ବାମଣ୍ଡା କାହିଁକି ସମଗ୍ର ଉତ୍କଳରେ ସୁଢ଼ଳଦେବ କହିଲେ ହିଁ ଊନବିଂଶ ଶତାବ୍ଦୀର ଚିର ଜାଗ୍ରତ ଏକ ସାରସ୍ୱତ ଅନୁଷ୍ଠାନକୁ ବୁଝାଏ ।

ସୁଢ଼ଳଦେବଙ୍କ ଶାସକୀୟ ସିଦ୍ଧି, ଜନହିତକର କାର୍ଯ୍ୟ ଏବଂ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ବ୍ରିଟିଶ୍ ସରକାର ତାଙ୍କୁ ୧୮୮୯ରେ "C.I.E" ଉପାଧି ଏବଂ ୧୮୯୫ରେ "K.C.I.E."ଉପାଧିରେ ସମ୍ମାନିତ କରନ୍ତି । ଏ ପ୍ରସଙ୍ଗରେ General Review-1895 ଉଦାତ୍ତ କଣ୍ଠରେ ଘୋଷଣା କରେ -

....The advancement of the Raja to the dignity of K.C.I.E. on 1st January, 1895 and his subsequent investiture with the insignia at Calcutta, were noticed in the last year's review. The prudent and statesman like administration of which this was the reward continues to distinguish Raja Sudhal Deb above his fellows and to be model for other States...

ସୁଢ଼ଳଦେବଙ୍କ ଉପାଧି ପ୍ରାପ୍ତିରେ ସମଗ୍ର ଗଡ଼ଜାତ ରାଜନ୍ୟମଣ୍ଡଳୀ ଗର୍ବିତ ହୋଇ-ଥିଲେ । ଏହି ଉପାଧି ଧନ, ସମ୍ପତ୍ତି, ପ୍ରତିପତ୍ତି ଉଦ୍ଦେଶ୍ୟରେ ପ୍ରଦତ୍ତ ହୋଇନଥିଲା ବରଂ ବ୍ୟକ୍ତିଗତ ସାମର୍ଥ୍ୟ ପ୍ରତି ଉଦ୍ଦିଷ୍ଟ ଥିଲା । ପ୍ରଶାସନିକ ବିବରଣୀ ଏହି ସତ୍ୟକୁ ପ୍ରମାଣିତକରେ ।

"The distinction thus conferred, is one in which the whole of the chhatisgarh feudatories have reason to feel special pride, as being without precedent in their history upto this time, it is the more gratifying as being a recognition, not if any conspicuous accidents

of rank position or wealth, but purely of **PERSONAL MERIT**. It is to be hoped that it may serve as a stimulus particularly to the younger generation of chiefs, in their endeavours to emulate the prudent and successful administration of the Raja of Bamra-an administration on which the standard appears to be fully sustained in the record of the year under report.

KC.I.E ଉପାଧି ପ୍ରାପ୍ତିର ସନନ୍ଦର ଫଟୋକପି ପାଠକଙ୍କ ଅବଗତି ନିମନ୍ତେ ପରିଶିଷ୍ଟ ୧ ଓ ୨ରେ ପ୍ରଦାନ କରାଗଲା ।

ପରିଶିଷ୍ଟ-୧ ଓ ୨

*Victoria by the Grace of God of the United Kingdom of Great Britain and Ireland, Queen, Defender of the Faith, Empress of India and Sovereign of the Most Eminent Order of the Indian Empire, To Raja Sudhal Deo of Bamra, Companion of Our said Most Eminent Order, Greeting, Whereas We have thought fit to nominate and appoint you to be a Knight Commander of Our said Most Eminent Order of the Indian Empire, We do by these Presents grant unto you the dignity of a Knight Commander of Our said Order and hereby authorise you to have, hold and enjoy the said dignity and rank as a Knight*

*Grant of the dignity of a Knight Commander of the Order of the Indian Empire to Raja Sudhal Deo of Bamra, C.I.E.*

୧୮୯୫ ମାର୍ଚ୍ଚ ୭ ତାରିଖରେ କଲିକତାର ବଡ଼ଲାଟ ଭବନରେ ଏକ ଆଭିଜାତ୍ୟ ପୂର୍ଣ୍ଣ ଦରବାରରେ ସୁଢ଼଼ଳଦେବଙ୍କୁ KC.I.E ଉପାଧି ପ୍ରଦାନ କରାଗଲା । କନିଙ୍ଗହାମ ନାମ ଘୋଷଣା କଲାପରେ ସାର୍ ଜନ ଲାମ୍ବାର୍ଟ, ସାର୍ ଏଡ଼ୱିନ୍ ଓ ବୈଦେଶିକ ଉପସଚିବ ସୁଢ଼଼ଳଦେବଙ୍କୁ ମଞ୍ଚ ଉପରକୁ ପାଛୋଟି ନେଲେ । ମଞ୍ଚ ଉପରେ ସୁଢ଼଼ଳଦେବଙ୍କ କାନ୍ଧକୁ ପବିତ୍ର ତରବାରି ସ୍ପର୍ଶ ଦ୍ୱାରା ସମ୍ମାନିତ କରି KC.I.E ଉପାଧି ପ୍ରଦତ୍ତ ହେଲା । ଏ ସଂପର୍କିତ କେନ୍ଦ୍ର ପ୍ରଦେଶ କମିଶନରଙ୍କୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ପତ୍ର ନିମ୍ନରେ ପ୍ରଦତ୍ତ ହେଲା ।

KC.I.E ଉପାଧି ପାଇଥିବାରୁ ବ୍ରିଟିଶ୍ ସାମ୍ରାଜ୍ଞୀଙ୍କର ପ୍ରତିଟି ଅଭିଷେକୋତ୍ସବକୁ ସୁଢ଼଼ଳଦେବ ନିମନ୍ତ୍ରିତ ହେଉଥିଲେ । ୧୯୦୩ ଜାନୁୟାରୀ ଇଂପେରିୟାଲ ଦରବାରକୁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଅସୁସ୍ଥତା ବଶତଃ ସେ ଏଥିରେ ଯୋଗଦେଇ ପାରିନଥିଲେ । ଏହି ନିମନ୍ତ୍ରଣ ପତ୍ରର ଫଟୋକପି ପରିଶିଷ୍ଟ-୩ରେ ପ୍ରକାଶ କରାଗଲା ।

## ପରିଶିଷ୍ଟ-୩




*At the invitation of His Excellency the Viceroy and Governor-General of India the Chief Commissioner of the Central Provinces requests the honour of the attendance of Raja Sir Sudhal Deo K. C. I. E. of Bamra*

*at an Imperial Darbar to be held at Delhi on the 1st of January* **1903**, *to celebrate the Coronation of His Imperial Majesty the King-Emperor.*

H Robertson

*Chief Secretary to the Chief Commissioner.*

# ପଞ୍ଚମ ଅଧ୍ୟାୟ

## ଉପସଂହାର

ପାରଂପରିକତା ମଧ୍ୟରେ ନୂତନତା କ୍ୱଚିତ ଦେଖାଯାଏ । ପ୍ରାଚୀନ ପ୍ରୀତି ମଧ୍ୟରେ ବିକାଶର ବହମାନ ଧାରା ଶିଥିଳ ହୁଏ । କିନ୍ତୁ ପରମ୍ପରାର ସତ୍ୟନିଷ୍ଠ ପୂଜାରୀ ସାଜି ଅଳୀକତାର ଅନ୍ଧବିଶ୍ୱାସକୁ ଧ୍ୱଂସ କରି ଆଧୁନିକତାର ସୃଜନସ୍ୱପ୍ନରେ ସମଗ୍ର ବିଶ୍ୱକୁ ସ୍ତବ୍ଧ ଚକିତ କରିଦେବାର ସାମର୍ଥ୍ୟ ସୁଢ଼ଳଦେବଙ୍କର ଥିଲା । ପାରଂପରିକତାର ଭିତ୍ତିରେ ସେ ନୂତନର ଆବାହନ କରିଥିଲେ । ପ୍ରାଚୀନ ଓ ଆଧୁନିକର ଦ୍ୱୈତଧାରାର ସମନ୍ୱୟରେ ଏକ ପୁଷ୍କଳ ଓଡ଼ିଆ ସାହିତ୍ୟ ସେ ସୃଷ୍ଟି କରିଥିଲେ । ତେଣୁ ତାଙ୍କର ସାହିତ୍ୟ ଛିନ୍ନମୂଳ ନଥିଲା ବରଂ ଥିଲା ସଂସ୍କୃତିପୁଷ୍ଟ । ପାଶ୍ଚାତ୍ୟ ସଂସ୍କୃତିକୁ ସେ ପ୍ରାଚ୍ୟରୀତିରେ ଗ୍ରହଣ କରିଥିଲେ । ଆଧୁନିକତାର ସ୍ଫୁରଣ ଇଂରେଜ ଓ ବଙ୍ଗଳା ଭାଷା ଦେଇ ବାମଣ୍ଡାର ସଂସ୍କୃତାୟିତ ଭିତ୍ତିରେ ସମାହିତ ହୋଇଥିଲା ।

ପରୀକ୍ଷା ନିରୀକ୍ଷା, ବାଦାନୁବାଦ, ଆଲୋଚନା ପ୍ରତି ଆଲୋଚନା ମଧ୍ୟରେ ସତ୍ୟ ପ୍ରତିଷ୍ଠା ପାଉଥିଲା । ବିଜୁଳି-ଇନ୍ଦ୍ରଧନୁ କଳହ ପ୍ରେକ୍ଷାପଟରେ ସୁଢ଼ଳଦେବ ଆଧୁନିକତାର ପକ୍ଷପାତି ଥିଲେ । କିନ୍ତୁ ବାମଣ୍ଡା ପ୍ରେସରୁ 'ଅବନାରସତରଙ୍ଗ' ପ୍ରକାଶ କରି ଭଞ୍ଜୀୟ ପ୍ରୀତିର ଅକପଟ ନିର୍ଯ୍ୟାସ ସୂଚାଇଥିଲେ ସୁଢ଼ଳଦେବ । ଏ ମାଟିରେ ପଣ୍ଡିତଗଣ ଭଞ୍ଜକାବ୍ୟର ଗୁଣାଦର୍ଶ ପ୍ରତିପାଦନ କଲାବେଳେ, ପ୍ରେସରୁ 'ଦୋଷଦର୍ଶନ' ପ୍ରକାଶ କରି ଭଞ୍ଜୀୟ କାବ୍ୟର ଦୁର୍ବଳତା ଘୋଷାଣ କରୁଥିଲା । ରାଧାନାଥ "କବିବର" ଉପାଧି ପାଇଲାବେଳେ ବଡ଼ପଣ୍ଡାଙ୍କୁ ଦିଆଯାଉଥିଲା "ବକୁଳ କବି"ର ଉପାଧି । ରାଧାନାଥଙ୍କୁ ସଂବର୍ଦ୍ଧିତ କରୁଥିଲେ ପ୍ରାଚୀନପନ୍ଥୀ ପଣ୍ଡିତ ବଡ଼ପଣ୍ଡା । ବଡ଼ପଣ୍ଡାଙ୍କୁ ସଂବର୍ଦ୍ଧିତ କରୁଥିଲେ ଆଧୁନିକତାର ଭାଷ୍ୟକାର ବିଜୟଚନ୍ଦ୍ର ମଜୁମଦାର । ଏ ପରସ୍ପର ବିରୋଧୀ ମତ ମଧ୍ୟରେ ପ୍ରତିଷ୍ଠା ପାଉଥିଲା ଓଡ଼ିଆ ସାହିତ୍ୟ । ଉଜ୍ଜ୍ୱଳତର ହେଉଥିଲା ସୁଢ଼ଳ ଚରିତ୍ର ।

ସବୁକାଳର ସତ୍‌ଶିଳ୍ପୀଙ୍କର ଆଭିମୁଖ୍ୟ ସତ୍ୟ ଓ ସୁନ୍ଦରର ପରିପ୍ରକାଶ । ପ୍ରବଞ୍ଚନା ଓ ଆତ୍ମପ୍ରତାରଣାର ଉର୍ଦ୍ଧ୍ୱରେ ସାହିତ୍ୟରେ ସତ୍ୟ-ଶିବ-ସୁନ୍ଦରର ପ୍ରତିଷ୍ଠା ହିଁ ସୁଢ଼ଳଦେବଙ୍କର ଥିଲା ଆଭିମୁଖ୍ୟ । ସେ ଲେଖନୀ ଧରିଥିଲେ ସମାଜକୁ ସ୍ୱଚ୍ଛ ସୁନ୍ଦର କରି ଗଢ଼ିବାକୁ, ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାକୁ । ବାସ୍ତବତାର

ଦୃଷ୍ଟିଭଙ୍ଗୀ ନେଇ ସେ ଜଗତକୁ ନିରୀକ୍ଷଣ କରିଛନ୍ତି, କଳ୍ପନାପ୍ରବଣତାରେ ଭାସିଯାଇ ନାହାନ୍ତି । ସୁଢ଼ଳଙ୍କ ସାହିତ୍ୟ ପ୍ରକୃତିରୁ, ବାସ୍ତବ ଅନୁଭୂତିରୁ ଉଦ୍‌ଭୂତ । ଏଣୁ ଏହା ପ୍ରକୃତି ପରି ସତ୍ୟ, ମାଟିପରି ସୁନ୍ଦର ଓ ଆକାଶପରି ସଞ୍ଚରଣଶୀଳ ।

—



ଲେଖକ :
**ଅଧ୍ୟାପକ ସର୍ବେଶ୍ୱର ଦାଶ**
ପୂର୍ବତନ ଅଧ୍ୟକ୍ଷ,
ସରକାରୀ ଟ୍ରେନିଂ କଲେଜ,
ଅନୁଗୁଳ

ମହାମାନବଙ୍କ ବଚନ ସ୍ମରଣ
ଜୀବନକୁ କରେ ଧନ୍ୟ,
ଏଇ ଧରାଧାମ ଛାଡ଼ି ଯାଇଛନ୍ତି
ରହିଅଛି ପଦଚିହ୍ନ ।

ପଢ଼ିଲି ନାନା ଦେଶ ଭାଷା କାହିଁତ ନପୂରିଲା ଆଶା ।
ହେଉ ପଛକେ ସେ ନିକୃଷ୍ଟ, ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।
ଦେଖିଲି ବୁଲି ବହୁ ଦୂର, କାଞ୍ଚି କାମାକ୍ଷା କାନପୁର
ପାଇଲି ନାହିଁ ଘୂରି ଘୂରି, ମୋ ମାତୃଭାଷାର ମାଧୁରୀ ।
[ ଫକିରମୋହନ ]

ପୁସ୍ତକ ହେଉଚି ଜ୍ଞାନ-ଗନ୍ତାଘରର ଚାବିକାଠି । ପୁସ୍ତକ ଆମର ସର୍ବଶ୍ରେଷ୍ଠ ବନ୍ଧୁ । ଆସ ପଢ଼ିବା ।

ପ୍ରତ୍ୟେକ ଶ୍ରେଷ୍ଠ ପୁସ୍ତକ ଏକ କର୍ମ ଏବଂ
ପ୍ରତ୍ୟେକ ଶ୍ରେଷ୍ଠ କର୍ମ ଏକ ପୁସ୍ତକ ।

ଆଗ୍ରହର ସହିତ ବହିଟିଏ ପଢ଼, ଏହା ସୁଧସହିତ ମୂଲ୍ୟ ଫେରାଇଦେବ ।

ମଣିଷମାନଙ୍କ ପରି ବହିଗୁଡ଼ିକ । କମ୍ ସଂଖ୍ୟକ ମଣିଷ ମହତ୍ଭୂମିକା ଗ୍ରହଣ କଲାପରି, ଖୁବ୍ କମ୍ ସଂଖ୍ୟକ ବହି ମଧ୍ୟ ମହତ୍ ଭୂମିକା ଗ୍ରହଣ କରିଥାନ୍ତି । ଏବଂ ଅବଶିଷ୍ଟ ମଣିଷ ଓ ବହି ଅସଂଖ୍ୟତା ଭିତରେ ହଜିଯାନ୍ତି । [ଭୋଲ୍‌ଟେୟାର]

**ମହାମାନବଙ୍କ ଜୀବନୀ ସିରିଜ୍‌ର ବହିଗୁଡ଼ିକ ପଢ଼ନ୍ତୁ ଓ ପଢ଼ିସାରି ସାଇତି ରଖନ୍ତୁ ।**